# ଆଦ୍ୟ ସକାଳ

## ଶାନ୍ତନୁ କୁମାର ଆଚାର୍ଯ୍ୟ



ପ୍ରକାଶକ : ମନୋଜ କୁମାର ମହାପାତ୍ର
ଛାତ୍ର ମନ୍ଦିର . ବିନୋଦବିହାରୀ, କଟକ-୨

ମୁଦ୍ରକ : ଲିପିକାର, ଝାଞ୍ଜିରୀମଙ୍ଗଳା, କଟକ-୯

ପ୍ରଥମ ସଂସ୍କରଣ : ନଭେମ୍ବର, ୧୯୮୫
ପୁନର୍ମୁଦ୍ରଣ : ମାର୍ଚ୍ଚ, ୧୯୯୧

ମୂଲ୍ୟ : ଟ ୨୧-୦୦
ସାଦା ବନ୍ଧେଇ ଟ ୧୭-୦୦

# ସୂଚୀ



——

# ଆଦ୍ୟ ସକାଳ

ଶୀତଦିନର ଗୋଟିଏ ସକାଳ । କେଉଁ ମାସ ସେ କେଜାଣି—ମାଘ କି କାର୍ତ୍ତିକ ? ବର୍ଷର କେଉଁଟା ମାସ ? ବୈଶାଖଟା ଗରମଦିନେ ପଡ଼େ ନା ବର୍ଷାଦିନେ ? ଭୃଗୁର୍ ଏତେ କଥା ଭାବିବାକୁ ବେଳ ନଥାଏ । ସେ ଖାଲି ତା ଫୁଙ୍ଗୁଳା ଦେହଟାକୁ ଗରମରେ ଚେଙ୍କେଇ ବସିଥାଏ । ସେ ବସିଥାଏ ଗୋଟାଏ ଖଳାବାଡ଼ିରେ । ଖଳାସାକ ଧାନଗଦା, ନଡ଼ାଗଦା, ପାଲଗଦା । ଗୋଟାଏ ବଡ଼ ନଡ଼ାଗଦାରୁ କିଛି ନଡ଼ାବିଡ଼ା ଓଲଟି ଗୋଟିଏ ଗୁମ୍ଫା କରିଥାଏ ସେ । ସେଇ ଗୁମ୍ଫାମୁହଁରେ ଗୋଡ଼ ଲମ୍ବେଇ ବସିଥାଏ ମଧ୍ୟ ସେ । ତା ଦେହରେ ପରିଧାନ କହିଲେ ଖଣ୍ଡେ ଗ୍ରେଟିଆ ହାପ୍‌ପ୍ୟାଣ୍ଟ । ପ୍ୟାଣ୍ଟର ବୋତାମଗୁଡ଼ାକ ହୁଏତ ନଥାଏ କିମ୍ବା ସେଗୁଡ଼ିକୁ ସେ ଜାଣି ଜାଣି ଖୋଲି ରଖିଥାଏ । ସୁନାରଙ୍ଗର ପାଣିଚିଆ ଖରା ସୁନାରଙ୍ଗର ଖଳାବାଡ଼ି ଉପରେ ଝରଝର ଝରିପଡ଼ୁଥାଏ । ଝରିପଡ଼ୁଥାଏ ବି ସେ ସୁନାପାଣି ଭୃଗୁର ସର୍ବାଙ୍ଗରେ ।

ଭୃଗୁର ଦେହର ରଙ୍ଗ ଗୋରା କି କଳା ସେଥିରେ କିଛି ଯାଏ ଆସେ ନା । କିନ୍ତୁ ଶୀତଦିନକାଳର ସେଇ ପାଣିଚିଆ ସୁନେଲି ଖରା ସେ ଦେହ ଉପରେ ଗୋଟିଏ କମିସ୍ଥା କରୁଥାଏ । ତାର ଦେହ ଉଷ୍ମସିକ୍ତ ହୋଇଉଠୁଥାଏ ସେ କମିସ୍ଥାରେ । ସେଇ ଉଷ୍ମାଦକୁ ତୃପ୍ତିରେ ଅନୁଭବ କରିଚାଲିଥାଏ ଭୃଗୁ । ଗୋଡ଼ ଦୁଇଟା ତାର ଫାକକଟେଇ ହୋଇ ଲମ୍ବି ଯାଇଥାଏ ସାମ୍ନାକୁ । ସେଇ ଗୋଡ଼ ଦୁଇଟାକୁ ଛୁରେଇଲାବେଳେ ତା ଦେହରେ ଖେଳି ଯାଉଥାଏ ଶିହରଣ । ରୂମ ଟାଙ୍କୁର ଉଠୁଥାଏ ।

ଭୃଗୁର ଗୋଡ଼ ଗୋଟାକଯାକ ଏଇ କେତେଦିନ ଭିତରେ ଭରିଯାଇଥାଏ ସୁନାରଙ୍ଗର ଅସଂଖ୍ୟ ରୋମ । କିନ୍ତୁ ପ୍ରଥମ କୈଶୋରର ସର୍ବପ୍ରାଥମିକ ସ୍ୱପ୍ନ ତା ପାଇଁ ଖାଲି ସେତିକି ନୁହେଁ; ଜୀବନରେ ପ୍ରଥମଥର ପାଇଁ ତାକୁ ଅଜ୍ଞ କଅଣ ଜଣାପଡ଼ୁଥାଏ ଯାହା ସ୍ୱୟଂରେ ସେ କିଛି ହେଲେ ବୁଝିପାରୁ ନଥାଏ । ତାର ଦେହଟା ଖାଲି ମଝିରେ ମଝିରେ ଉଲ୍ଲସି ଉଠୁଥାଏ । ଆଉ ମନ ଭିତରେ ମଧ୍ୟ ସେମିତି କଅଣ ସବୁ ଲହଡ଼ି ଭଳି ଉଠୁଥାଏ ପଡ଼ୁଥାଏ । ତାକୁ ଆଜି ସବୁକଥା ନୂଆ ନୂଆ ଲାଗୁଥାଏ । ସବୁର ଜଣାରୂପ ଅତି ଆଶ୍ଚର୍ଯ୍ୟଜନକଭାବେ ବଦଳିଯାଇ ଅଜଣା ପାଲଟି ଯାଇଥାଏ ।

---

ଧରିତ୍ରୀ, ନଭେମ୍ବର ୧୯୮

ଗୋଟିଏ ନିଶୂନ ନିକାଞ୍ଚନ ଖଲାବାଡ଼ିରେ ବାର-ତେର ବର୍ଷର ବାଳକ ଭୃଗୁ ଯେପରି ରହସ୍ୟରେ ସେଭଳି ଏକା ଏକା ବସି ଏହିପରି ଅଭିଭୂତ ହୋଇ ପଡ଼ିଥିବାବେଳେ, ଖଲାବାଡ଼ିକୁ ଲାଗିଥିବା ବିଶାଳ ଆଉ ଗହଳ ବଣର ଦାଢ଼ରେ ରହିଥିବା ମେଞ୍ଚାଏ ବୁଦା ଆଢ଼ୁଆଳରେ କି ଗୋଟାଏ ଜନ୍ତୁ କୌତୂହଳବଶତଃ ଅନେକବେଳୁ ଅନେକ ଚାହିଁଥାଏ ଆଉ ମଝିରେ ମଝିରେ ଲମ୍ବା ଆଉ ବେଶ୍ ଚଉଡ଼ା ଲାଲ୍ ଜିଭଟିଏ କାଢ଼ି ପିଲାଟିକୁ ଖତେଇ ହେଉଥାଏ ବା ଓଠ ଚାଟୁଥାଏ ।

ଜନ୍ତୁ, ମଣିଷ ଓ ଜନ୍ତୁ—ଏ ଦୁହିଁଙ୍କ ମଧ୍ୟସ୍ଥଳଟି ସବୁଠାରୁ ପରି ଆଜି ବି ଶୂନ୍ୟ ମନେହେଉଥିଲେ ମଧ୍ୟ ପ୍ରକୃତରେ ତାହା ଶୂନ୍ୟ-ପଡ଼ି ନଥାଏ । ଖଲାବାଡ଼ି ଓ ଜଙ୍ଗଲ ମଝିରେ ଯେଉଁ କେତୋଟି ଗୋଟିଗୋଟିକିଆ ବଡ଼ଗଛ ଏଯାବତ୍ ନା ମଣିଷର ନା ଜନ୍ତୁର ଇଲାକା ଅନ୍ତର୍ଭୁକ୍ତ ହୋଇ ନିଜର ସ୍ୱାଧୀନ ଅସ୍ତିତ୍ୱ ବଜାୟ ରଖିପାରିଥାଏ । ସେଥିରୁ ଗୋଟିଏ କୌଣସି ଡେଙ୍ଗା ସରସର ଗଛର ଉପରେ ଡାଳରେ ବସିଥାଏ ଚଢ଼େଇଟିଏ । ଖଲାବାଡ଼ିର ସେଇ ନଡ଼ାଗଦା କଡ଼ରେ ଗୋଡ଼ ଲମ୍ବେଇ ବସିଥିବା ମଣିଷଟି ସହିତ ବୁଦା ଆଢ଼ୁଆଳରେ ଛକି ବସିଥିବା ଜାନୁଆରଟାକୁ ତା ବସିବା ସ୍ଥାନରୁ ସେ ସମକାଳୀନଭାବେ ଦେଖିପାରୁଥାଏ । ଆଉ ସେପରି ଦେଖିବାଦ୍ୱାରା ତା ଦେହଟା କେଜାଣି କାହିଁକି ଏତେ ଜୋର୍ ଥରଯାଉଥାଏ ଯେ ସେ ଆଉ ସ୍ଥିର ହୋଇ ବସି ନ ପାରି ଫୁର୍‌କିନା ଏ ଡାଳରୁ ସେ ଡାଳକୁ ଖଣ୍ଡିଉଡ଼ା ମାରୁଥାଏ । ସେଇ ଖଣ୍ଡିଉଡ଼ା ସହିତ ଗୋଟିଏ ଅସ୍ୱାଭାବିକ ରବ ବାହାରିଆସୁଥାଏ ତାର ମଧୁର-ସଙ୍ଗୀତ-ଅଭ୍ୟସ୍ତ ପକ୍ଷୀକଣ୍ଠରୁ । ଉଭୟ ଭୃଗୁ ଓ ଜନ୍ତୁ ପକ୍ଷୀଟିର ସେପରି ଅସଙ୍ଗତ ସ୍ୱରକୁ ଶୁଣିପାରୁଥାନ୍ତି ନିଶ୍ଚୟ । ଜନ୍ତୁ ପକ୍ଷୀର ଡାକ ଜନ୍ତୁଟିକୁ ବିରକ୍ତ କରୁଥିବା ସତ୍ତ୍ୱେ ଭୃଗୁର ଉଚ୍ଚାଟିତ ମନ ଟୋକରକୁ ବୋଧହୁଏ ବେଶି ବେଶି ପ୍ରଭାବିତ କରିଲାଗିଥାଏ ।

ଭୃଗୁର ବସିବା ଢଙ୍ଗ ଏ ଭିତରେ ସମ୍ପୂର୍ଣ୍ଣ ବଦଳିଯାଇଥାଏ । ଗୋଡ଼ ଯୋଡ଼ିକୁ ଲମ୍ବେଇ ବସିବା, ପରିବର୍ତ୍ତେ ସେ ଏଥର ଗୋଡ଼ ଯାକି ଦେଇ ତଳେ ଆଣ୍ଠୁମାଡ଼ି ବସିବା ଢଙ୍ଗକୁ ଆଦରି ନେଇ ସାରିଥାଏ । ଫଳରେ ଟିକି ଅଧା ପେଣ୍ଟଖଣ୍ଡିକ ତା ଅଣ୍ଟା ତଳକୁ ପୁରା ଖସିପଡ଼ିଥାଏ । ସେ ଅବସ୍ଥାରେ ବାହାରୁ ତାକୁ ଯେ କେହି ଦେଖିଥାନ୍ତା ସେ ଯେ ତାକୁ ନଙ୍ଗଳା ଟୋକାଟାଏ ବୋଲି ଭାବିଦେଇ ହସିପକାଇଥାନ୍ତା, ସେ ବିଷୟରେ ତାର ଆଦୌ ଖିଆଲ ନଥାଏ । ବରଂ ଯେତେବେଳେ ସେ ନିଜ ବିଷୟରେ ନିଜେ ଏତେ ଦୂର ବିସ୍ମିତ ହୋଇପଡ଼ିଥାଏ ଯେ ବାହାର ଦୁନିଆ ବା ସେଭଳି କୌଣସି ବାହ୍ୟଚିନ୍ତା ତାର ଚୈତନ୍ୟରୁ ସମ୍ପୂର୍ଣ୍ଣ ଅବଲୁପ୍ତ ହୋଇଯାଇଥାଏ । ଖଲାବାଡ଼ିର ନଡ଼ାକୁଟା ସେଇ ଜଗତଟାକୁ ତା ବୟସର ଅନ୍ୟ ସମସ୍ତଙ୍କ ଭଳି ଗୋଟିଏ ଏକାନ୍ତ ଆତ୍ମିକ ଓ ନିଭୃତ ଜଗତ ବୋଲି ଜାଣିକରି ବର୍ତ୍ତମାନ ସେ ନିଜକୁ ନିଜେ ଏକ ପ୍ରଗାଢ଼ ବିସ୍ମୃତିର ଗହ୍ୱାଣିରେ

ପର୍ଯ୍ୟବେକ୍ଷଣ କରିଲାଗିଥାଏ ।

ବଣ ଉହାଡ଼ରେ, ବୁଦାଆଡ଼ୁଆଳରେ ନିଜକୁ ପୂରାପୂରି ଲୁଚାଇ ରଖିପାରିଛି ବୋଲି ମନେକରୁଥିବା ଜନ୍ତୁଟି ଯୋଡ଼ାଏ ନିଷ୍ପଲ ପଥୁରିଆ ଆଖିରେ ଖଲାବାଡ଼ି ଉପରକୁ ନିଘା ରଖିଥାଏ । ତା ଆଖିରେ ଭୃଗୁର ପ୍ରତ୍ୟେକଟି ହାବଭାବ ଆଉ ହଲଚଲ ବଡ଼ କୌତୂହଳ ଜାତ କରୁଥାଏ । ବୋଧହୁଏ, ସେଥିପାଇଁ ତାର ପ୍ରଶସ୍ତ ପିଠିର ମୋଟା ମୋଟା ଟାଆଁସା ଟାଆଁସ ରୁମଗୁଡ଼ାକ ଠାଏ ଠାଏ ଖାଡ଼ା ଠିଆହୋଇପଡ଼ି ପୁଣି ନଇଁଯାଉଥାଏ ।

କିନ୍ତୁ, ଗଛ ଡାଳରେ ବସିଥିବା ପକ୍ଷୀଟିର ଧୈର୍ଯ୍ୟଚ୍ୟୁତି କ୍ରମଶଃ ଅଧିକରୁ ଅଧିକ ବଢ଼ି-ଚାଲିଥାଏ । ତାର କଣ୍ଠରେ ଅଧିକ ଆଶଙ୍କା ଜମାଟ ବାନ୍ଧି ଯାଉଥିବାରୁ ସ୍ୱର କ୍ରମଶଃ ବିକୃତ ହୋଇଉଠୁଥାଏ । ତାର ଏଇ ପରିବର୍ତ୍ତିତ ସ୍ୱରକୁ ବୁଦା ଆଡ଼ୁଆଳରେ ଛକିଥିବା ଜନ୍ତୁ ଯେ ବଡ଼ ବିରକ୍ତି ସହକାରେ ଗ୍ରହଣ କରୁଥାଏ, ଏଥିରେ ସନ୍ଦେହ ନଥାଏ । କାରଣ ପ୍ରତିଥର ଚଢ଼େଇର ଏଇ ଶଙ୍କାକୁଳ ସତର୍କ ବାଣୀ ଜନ୍ତୁର କାନରେ ବାଜିବା ମାତ୍ରେ ତାର ମୋଟା ମୋଟା ଓଠ ଦୁଇଟା ମଝିରେ ଝୁଲୁଥିବା ଲମ୍ବା ଲମ୍ବା ଖଡ୍‌ଗ ପରି ଶାଣିତ ଦାନ୍ତ ମୂଳିଗୁଡ଼ିକ ପାଇଁ ଝଲସି ଉଠି ପୁଣି ଅଦୃଶ୍ୟ ହୋଇଯାଉଥାଏ ।

କିନ୍ତୁ ଭୃଗୁର ଜ୍ଞାନ ବାହ୍ୟ ଜଗତରେ ନଥାଏ । ସେ ପୂରାପୂରି ନିଜ ଭିତରେ ନିଜେ ନିବୃତ୍ତ । ତାର ଆଖି, ନାକ, କାନ ପ୍ରଭୃତି ଇନ୍ଦ୍ରିୟ, ଯେ କି ଆଜନ୍ମରୁ ବହିର୍ମୁଖ ହୋଇ ଏକ ଅଜଣା ବିଶ୍ୱକୁ ଜାଣିନେବାକୁ ପ୍ରତି ପଦେ ପଦେ ତତ୍ପରତା ପ୍ରକାଶ କରୁଥିଲେ, ବର୍ତ୍ତମାନ ସେମାନଙ୍କର କଅଣ ହୋଇଗଲା କେଜାଣି—ସେମାନେ ଆଉ ବାହାର ଦୁନିଆର କୌଣସି ସମ୍ବାଦ ଗ୍ରହଣ କରୁ ନଥିଲେ । ତାଙ୍କ ମୁହଁଗୁଡ଼ାକ ବୁଲିଯାଇଥିଲା ପଛପଟକୁ । ସେଇ ପଛପଟେ, ବାହାର ଦୁନିଆର ଠିକ୍ ବିପରୀତ ଦିଗରେ ଯେଉଁ ଅନ୍ୟ ଅଜ୍ଞାତ ଜଗତଟା ଏଯାବତ୍ ଭୃଗୁର ସମ୍ପୂର୍ଣ୍ଣ ନିଜସ୍ୱ ହୋଇ ମଧ୍ୟ ଥିଲା ସମ୍ପୂର୍ଣ୍ଣ ଅପରିଚିତ, ଭୃଗୁର ଇନ୍ଦ୍ରିୟମାନେ ବର୍ତ୍ତମାନ ସେଇ ଦୁନିଆଟା ବିଷୟରେ ଗୋଟାକ ପରେ ଗୋଟାଏ ଅଜବ ସମ୍ବାଦ ଅଜାଡ଼ି ଦେଇ ଚାଲିଥିଲେ । ଅନ୍ତର୍ଜଗତର ସେଇ ଅଲୌକିକତା ଭୃଗୁକୁ ମୁଗ୍ଧ ବିସ୍ମୟାଭିଭୂତ କରିପାରିଥାଏ । ତେଣୁ ପକ୍ଷୀର ଡାକ ବା ବଣଆଡ଼ୁ-ପବନରେ ଭାସିଆସୁଥିବା ହିଂସ୍ରତାର ମହୁଆ ଗନ୍ଧ ପ୍ରତି ତାର କାନ ନାକ ପୂରାପୂରି ଜଡ଼ ପାଲଟି ଯାଇଥାଏ । ସେ ବର୍ତ୍ତମାନ ହୋଇପଡ଼ିଥାଏ ସମ୍ପୂର୍ଣ୍ଣ ଉଲଗ୍ନ । ଗ୍ରେଟ ପ୍ୟାଣ୍ଟ ଗଞ୍ଜିକ କେତେବେଳେ ତା' ଅଣ୍ଟାରୁ ଆଣ୍ଠୁ ଓ ଆଣ୍ଠୁରୁ ବଳାଗଣ୍ଠି ଟପି ଯାଇଥିଲା ଜାଣିପାରି ନଥାଏ ସେ । ଶୀତ ସକାଳର ସୁନାରଙ୍ଗର ଖରା ଭୃଗୁର ସାମ୍ନା ପଟଟିକୁ ସମ୍ପୂର୍ଣ୍ଣ ଆଲୋକିତ କରୁଥାଏ—ମନ୍ଦିର ଗାତ୍ରରେ ଉତ୍କୀର୍ଣ୍ଣ କୌଣସି ଏକ ଦେବଶିଶୁର ଲଳିତ ବିଗ୍ରହ ପରି । ଆଉ ଅଦୂରରେ ଗଛଲତା ଆଡ଼ୁଆଳରେ ଛକି ବସିଥିବା ଜନ୍ତୁଟି ଅନ୍ଧାରରେ ରହି, ନିଜର ଆସୁରିକ ଦନ୍ତ ବିକସିତ କରି, ସେଇ ଦେବ-

ଶିଶୁଟିର ଶରୀରଟା ବାସ୍ତବିକ ରକ୍ତ-ମାଂସରେ ଅଥବା ପଥରେ—ଏଇ ପାର୍ଥକ୍ୟ ପରୀକ୍ଷା କରିବାର ଉପଯୁକ୍ତ ମୁହୂର୍ତ୍ତକୁ ଅପେକ୍ଷା କରି ବସିଥାଏ ।

ଗଛଡ଼ାଳରେ ପକ୍ଷୀ ବହୁ ସମସ୍ତ ଧରି ବହୁ ପ୍ରକାର ଭାବର ପରୀକ୍ଷା ସତ୍ତ୍ୱେ ନିର୍ବୋଧ ମଣିଷ ପିଲାଟିକୁ ତାର ଆସନ୍ନ ବିପଦ ସମ୍ପର୍କରେ ସତର୍କ କରିଦେବାକୁ ଅକ୍ଷମ ହୋଇଛି ଜାଣି, କିଛି ସମସ୍ତ ପାଇଁ ସ୍ତବ୍ଧ ହୋଇଯାଇଥାଏ । ମନରେ ତାର ଦେଖାଦେଇଥାଏ ଘୋର ଅବସାଦ । ଦିନ ପରେ ଦିନ ଏହିପରି ଅନେକ ହିଂସାକାଣ୍ଡ ସେ ଦେଖିଆସିଛି ସ୍ୱଚକ୍ଷୁରେ । ଆଉ ପ୍ରତିଥର ଏପରି ଜଘନ୍ୟ ହିଂସାକାଣ୍ଡର ଆଶଂକିତ ମୁହୂର୍ତ୍ତ ଉପସ୍ଥିତ ହେବାମାତ୍ରେ ଏକ ତୀବ୍ର ବ୍ୟାକୁଳତାର ଆଲୋଡ଼ନ ସେ ଅନୁଭବ କରିଛି ଅନ୍ତରରେ । ସେଇ ବ୍ୟାକୁଳତାବଶତଃ ସେ ଛଟପଟ ହୋଇ ଚିତ୍କାର କରିପକାଏ । ତାର ମନେହୁଏ ହୁଏତ ଦୁର୍ବଳପକ୍ଷ ତା' ମୁଣ୍ଡ ଉପର ଆକାଶରୁ ଖସୁଥିବା ସେଇ ଦୈବୀବାଣୀ ଶ୍ରବଣକରି ସତର୍କ ହୋଇଉଠିବ ଏବଂ ଆତ୍ମରକ୍ଷା କରିବାକୁ ସମର୍ଥ ହେବ । କିନ୍ତୁ, ହାୟ ! ତାର ଏ ମହତ୍ ପ୍ରବୃତ୍ତିଟି ଏହିପରି ପ୍ରାୟତଃ ବ୍ୟର୍ଥକାମ ପ୍ରମାଣିତ ହୁଏ ପ୍ରତିଥର ପ୍ରତି ଅଶୁଭ ଲଗ୍ନରେ । ପକ୍ଷୀଟି ନିରସ ହୋଇପଡ଼ୁଥାଏ, ଆଉ ସ୍ଥାନ ତ୍ୟାଗକରି ଅନ୍ୟତ୍ର ଉଡ଼ିଯିବା ପାଇଁ ଡେଣାଯୋଡ଼ିକୁ ଝାଡ଼ି ଝାଡ଼ି ଚାରିଆଡ଼େ ଆଖି ବୁଲାଇବା ଆରମ୍ଭ କରିସାରିଥାଏ ।

ପକ୍ଷୀଟି ଯେଉଁ ଗଛରେ ବସି ବର୍ତ୍ତମାନ ତା ଚାରିପାଖକୁ ଅନେଇ କରୁଥାଏ, ସେଠୁ ଛୋଟିଆ ବାଟରେ ସେ ବେଶ୍ ଦେଖିପାରୁଥାଏ ଶୀତୁଆ ସକାଳର କୁହୁଡ଼ିଘେରା ତାର ସେଇ ପ୍ରିୟତମ ଚିରଶ୍ୟାମଳ ଆରଣ୍ୟକ ବାସସ୍ଥଳ । କିନ୍ତୁ ଅନ୍ୟ ଦିଗଟି ଥାଏ ତା ପାଇଁ ଏକ ଗଭୀର ଦୁଶ୍ଚିନ୍ତାର ଦିଗ । ସେପଟେ ଅଦ୍ଭୁତ ଘଟଣାସବୁ ଘଟିଚାଲିଥାଏ ନିତିଦିନ । ରାତିରେ ନିଆଁ, ସକାଳେ ସନ୍ଧ୍ୟା ଧୂଆଁ ସାଙ୍ଗକୁ ବିବିଧ ଶବ୍ଦର ବାସସ୍ଥଳ ହୋଇଥାଏ ସେ ଅଞ୍ଚଳଟା । ବୃକ୍ଷବର୍ଜିତ ସେଇ ନିଆଁ ଧୂଆଁ ଶବ୍ଦମୟ ଅଞ୍ଚଳଟା ଯେ ମଣିଷର ବାସସ୍ଥଳ—ବେଶ୍ ଜାଣିହେଉଥାଏ । କିନ୍ତୁ ପକ୍ଷୀର ଦୁଶ୍ଚିନ୍ତାର କାରଣ ମଣିଷ ବା ସେଇ ନିଆଁ ଧୂଆଁ ବାସସ୍ଥଳଟା ନୁହେଁ—ତାର ଦୁଶ୍ଚିନ୍ତାର ମୂଳ କାରଣ ଥିଲା ସେଇ ଦିଗ ବା ସେଇ ଅଞ୍ଚଳଟିର ସାମଗ୍ରିକ ଦୁର୍ଭାଗ୍ୟ । ତାର ପ୍ରବୃତ୍ତି ତା କାନରେ ସ୍ପଷ୍ଟ ଏକ ସମ୍ବାଦ ପରିବେଷଣ କରି ଲାଗିଥିଲା—ସେପଟେ ମୃତ୍ୟୁର ଦିଗ ! ସେପଟେ ଯେଉଁମାନେ ବାସକରନ୍ତି ସେମାନେ ଆଉ ବେଶିଦିନ ବଞ୍ଚିବେ ନାହିଁ, କିଛି ଗୋଟାଏ ଘଟିଯିବ ଆଉ ସେମାନେ ସମୂଳେ ନିଶ୍ଚିହ୍ନ ହୋଇଯିବେ—ଜାଣି ହେଉଥାଏ ସ୍ପଷ୍ଟ । ଆଉ ଏଇ ବାର୍ତ୍ତାଟିକୁ ନେଇ ସେ ଉଡ଼ିଯିବାକୁ ଚାହିଁଥିଲା ସେଠିକି, ସେଇ ମରଣୋନ୍ମୁଖୀ ନିଆଁ ଧୂଆଁ ଆଉ ଶବ୍ଦର ଅଞ୍ଚଳକୁ, ଅନ୍ତତଃ ଥରଟିଏ ସତର୍କ କରିଦେବା ପାଇଁ ସେଠାକାର ଅଧିବାସୀଙ୍କୁ । କିନ୍ତୁ ନିମ୍ନଜଗତର ଏଇ ପ୍ରାଣୀଗୁଡ଼ିକ, ଏଇ ଦୋଳାବାଡ଼ିର ନଙ୍ଗଳା ମଣିଷ ପିଲାଟି ହେଉ ବା ବୁଢା ଆଡ଼ୁଆଳର ଘୁମୁହାଁ ଜାଳୁଆରଟା ହେଉ, ଊର୍ଦ୍ଧ୍ୱରୁ ଅବତରଣ କରୁଥିବା ସତର୍କବାଣୀକୁ ଶୁଣିବାପାଇଁ ସେମାନଙ୍କର ଧ୍ୟାନ ଥାଏ କି ନଥାଏ ସେ ବିଷୟରେ ଅତ୍ୟନ୍ତ ସନ୍ଦିହାନ ହୋଇପଡ଼ୁଥାଏ ପକ୍ଷୀଟି ସେତେବେଳକୁ ।

ଭୃଗୁ ବର୍ତ୍ତମାନ ଖଳାବାଡ଼ର ନଡ଼ାଗଦାରେ ଖୋଳା ହୋଇଥିବା ଉଷ୍ମ ଗୁମ୍ଫାଟିର ମୁହଁ ପାଖରୁ ଘୁଞ୍ଚିବାକୁ ଆରମ୍ଭ କରିଥାଏ । ତାର ହଲଚଲ ଭଙ୍ଗିରେ ନଥାଏ ଆଶଙ୍କାର ଲକ୍ଷଣ ବା ଡରୁଆ ସ୍ୱରୁ ମଣିଷର ଲକ୍ଷଣ । ତା କାନ୍ଧରେ ଧନୁ ବା ହାତରେ ବର୍ଛାଟିଏ ମଧ୍ୟ ନ ଥାଏ ଯଦ୍ୱାରା ସେ ଆତ୍ମରକ୍ଷା କରିବାକୁ ସମର୍ଥ ହୋଇଥାନ୍ତା କୌଣସି ହିଂସ୍ର ଆକ୍ରମଣରୁ । କିନ୍ତୁ ତାର ଲମ୍ବା ଲମ୍ବା ଗୋଡ଼ ଦୁଇଟା ତାକୁ ନିଦରେ ଚାଲୁଥିବା ମଣିଷଟିଏ ଭଳି କୁଆଡ଼େ ନାହିଁ କୁଆଡ଼େ ବୋହିନେଇ ଚାଲିଥାଏ ଧୀରେ ଧୀରେ । ତାର ଏଭଳି ଅସହାୟ ଅବସ୍ଥା ଦେଖି ପକ୍ଷୀ ବିସ୍ମିତ ହୋଇଗଲା । ତାର ଭୟଗ୍ରସ୍ତ କଣ୍ଠରୁ ଅଚାନକ ଏକ କରୁଣ ଆର୍ତ୍ତନାଦ ଅସହାୟ ମଣିଷଟି ଉଦ୍ଦେଶ୍ୟରେ ଖସିପଡ଼ିଲା । ଆଉ ସେ ସ୍ଥାନ ଛାଡ଼ି ଅନ୍ୟ ଆଡ଼କୁ ଉଡ଼ିଯିବା ପରିବର୍ତ୍ତେ ଗଭୀର କୌତୂହଳ ସହକାରେ ଭୃଗୁର ଗତିବିଧି ପ୍ରତି ତା ଦୃଷ୍ଟି ଆବଦ୍ଧ ହୋଇଗଲା ।

ଭୃଗୁର ଚାଲିଟି ଥିଲା ଗୋଟିଏ ନୂଆ ଚାଲିଶିଖିଥିବା ଶିଶୁର ଚାଲି ପରି ଏକାନ୍ତ ଅନିର୍ଦ୍ଦିଷ୍ଟ । କିନ୍ତୁ, ସେ ଯେ ଖଳାବାଡ଼ି ଛାଡ଼ି ହିଂସ୍ରଜନ୍ତୁର ନିବାସ ସେଇ ଅରଣ୍ୟ ପ୍ରାନ୍ତର ବୃଦ୍ଧାଗୁଳିକ ଆଡ଼କୁ ମୁହେଁଇ ଯାଉଥିଲା—ହଠାତ୍ ଏଇ ଆଶଙ୍କା ବଳବତ୍ତୀ ହୋଇ-ପଡ଼ୁଥିଲା ମୁହୂର୍ତ୍ତି ପରେ ମୁହୂର୍ତ୍ତି । ଚଢ଼େଇଟି ଶିହରି ଉଠିଲା ଆଉ ଗଛର ଉପର ଡାଳରୁ ଝାମ୍ପମାରି ଖସିପଡ଼ିଲା ସିଧା ଭୃଗୁର ମୁଣ୍ଡ ଉଚ୍ଚ ଗୋଟିଏ ଗ୍ରୋଟ ଗଛ ଉପରକୁ । କିନ୍ତୁ ତାହା ମଧ୍ୟ ବିଫଳ ହେଲା । ସ୍ୱପ୍ନରେ ବୁଡ଼ିରହି କୁହୁଡ଼ିରେ ପହଁରୁଥିବା ନଙ୍ଗଳା ମଣିଷ ପିଲାଟି ତା ପାଇଁ ପକ୍ଷୀର ସମସ୍ତ ଜାଗତିକ ସମ୍ବେଦନକୁ ଆଡ଼ଆଖିରେ ଥରେ ଅନେଇବାକୁ ମଧ୍ୟ ଇଚ୍ଛା କରୁ ନଥିଲା ।

ଭୃଗୁ ସେତେବେଳକୁ ଖଳାବାଡ଼ର ସୀମା ଟପିସାରିଥିଲା । ସେଠାରୁ ମାତ୍ର କେଇ ପାହୁଣ୍ଡ ଦୂରରେ ତାକୁ ସ୍ୱାଗତ ଜଣାଇବାକୁ ଯେଉଁ ଭୟଙ୍କର ହିଂସ୍ରତା ଆଁ କରି ବସି-ରହିଥିଲା, ତାର ଗତି ସମ୍ଭବତଃ ପୂର୍ବନିର୍ଦ୍ଦିଷ୍ଟ ହୋଇସାରିଥିଲା ଠିକ୍ ସେଇଠାକୁ । କିନ୍ତୁ ହଠାତ୍ ଏକ ଅଦ୍ଭୁତ ବ୍ୟାପାର ପ୍ରତିବନ୍ଧକତା ସୃଷ୍ଟି କଲା ଭୃଗୁର ବିଧିନିର୍ଦ୍ଦିଷ୍ଟ ଗତିପଥରେ ।

ଖଳାବାଡ଼ି ଓ ବଣ ମଝାମଝି ଗୋଟିଏ ବିଶାଳ ଶିମିଳିଗଛ । ଏଇ ଶିମିଳିଗଛଟା ବସନ୍ତଋତୁର ଆବାହକ ବୋଲି ଜାଣନ୍ତି ସମସ୍ତେ । ଶୀତ ଅନ୍ତେ ଦକ୍ଷିଣର ପ୍ରଥମ ଉଷ୍ମ-ମଳୟ ସ୍ପର୍ଶରେ ଗଛଟା ଲକ୍ଷ ଲକ୍ଷ ଲାଲ ଟହଟହ ଜିଭ କାଢ଼ି ପ୍ରମତ୍ତ ନାଗଟିଏ ଭଳି ଉଗ୍ର ହୋଇଉଠେ ବନପ୍ରାନ୍ତରେ । ତାର ଏଭଳି ଉଗ୍ରହେବା ଢଙ୍ଗ ଯୋଗୁ ଡରିଯାନ୍ତି ଅନେକ । ଗଛଟିକୁ ଗୋଟିଏ ଭୟଙ୍କର କାମାସକ୍ତା ଅସୁରାନାରୀ ମନେକରି ମଣିଷମାନେ ତା ପାଖ ମାଡ଼ିବାକୁ ସାହସ କରନ୍ତି ନାହିଁ କେବେ । କିନ୍ତୁ ଚଢ଼େଇମାନେ ମଣିଷମାନଙ୍କ ପରି ଲାଲରଙ୍ଗକୁ ଭୟ କରନ୍ତି ନାହିଁ ଏତେ । ସେମାନେ ଆସନ୍ତି ଆକୃଷ୍ଟ ହୋଇ ଖାସ୍ ସେଇ ଲାଲରଙ୍ଗର ପ୍ରଲୋଭନରେ । ଏଇ କାରଣରୁ ବସନ୍ତଋତୁର ପ୍ରାରମ୍ଭରେ ବଣ କଡ଼ର

ଏଇ ଖଳାବାଡ଼ି ପାଖ ଶିମିଳିଗଛରେ ଚଢ଼େଇମାନଙ୍କର କଳରବରୁ ହିଁ ଆରମ୍ଭ ହୋଇଯାଏ ବସନ୍ତ ଉତ୍ସବ ଏ ଅଞ୍ଚଳରେ ।

ସ୍ୱପ୍ନାଚ୍ଛନ୍ନ ଅବସ୍ଥାରେ ଭୃଗୁ ହୁଏତ ଆକୃଷ୍ଟ ହୋଇ ଚାଲିଥାଏ ସେଇ କାମାସକ୍ତା ଅସୂମ୍ଭନାସ୍ତ କୁହାଯାଉଥିବା ଶିମିଳିଗଛଟା ଦିଗରେ । ଚଢ଼େଇର ଚାହାଣିରେ ଉଲଗ୍ନ ମଣିଷଟି ନିଜେ ମଧ୍ୟ ଖୁବ୍ କାମାସକ୍ତ ହୋଇପଡ଼ିଥିବା ଭଳି ଦିଶୁଥାଏ । ତାର ଏ ଅବସ୍ଥା ଲକ୍ଷ୍ୟକରି ପକ୍ଷୀ ହୃଦୟରେ ମଣିଷଟି ପାଇଁ କିଞ୍ଚିତ୍ ଅନୁକମ୍ପା ଜାତ ହୋଇଥାଏ । ଭୃଗୁ କିନ୍ତୁ ପକ୍ଷୀର କାରୁଣ୍ୟମୟ ଚାହାଣି ସମ୍ପର୍କରେ ଆଦୌ ସଚେତନ ନ ଥାଏ । ସେ ସିଧା ଆଗେଇ ଯାଉଥାଏ ସେଇ ଗଛଟି ପାଖକୁ । ତାର ସରୁ ଲମ୍ବା ଲମ୍ବା ହାତଯୋଡ଼ିକ କାନ୍ଧର ଖୁଆ ମୂଳରୁ ଦୁଇ ବିପରୀତ ଦିଗରେ ସମ୍ପୂର୍ଣ୍ଣ ବିସ୍ତୃତି ଲାଭ କରିଯାଇଥାଏ । ଏହାପରେ ଯାହା ଘଟିବାକୁ ଯାଉଥାଏ ସେ ସମ୍ପର୍କରେ ପକ୍ଷୀର ଆଉ ସନ୍ଦେହ ନ ଥାଏ । ଶିମିଳିଗଛର ବିଶାଳ କଣ୍ଟକିତ ବକ୍ଷରେ ଏକ ରକ୍ତାକ୍ତ ଆଲିଙ୍ଗନ ସହିତ କାମବିହ୍ୱଳ କିଶୋରଟିର ସବୁତକ ସ୍ୱପ୍ନ, ଆଉ ମୁହୂର୍ତ୍ତିକେ ଯେ ନିଃଶେଷ ହୋଇଯିବ ପକ୍ଷୀ ବୁଝିପାରୁଥାଏ ।

କିନ୍ତୁ, ଏ କଣ ! ଭୃଗୁର ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଆଚରଣରେ ପକ୍ଷୀର କରୁଣାର୍ଦ୍ର କଣ୍ଠରୁ ଏକ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ସଙ୍ଗୀତର ପ୍ରାଥମିକ ଘୋଷାପଦଟି ବଳେ ବଳେ ବାହାରିଆସିଲା । ସେ ଲୋମୋଦ୍‌ଗମ ହୋଇ ଲକ୍ଷ୍ୟକଲା—ଆଦ୍ୟ ଯୌବନର ପ୍ରଥମ ସ୍ପର୍ଶରେ ପ୍ରମତ୍ତ ନବକିଶୋରଟି କୌଣସି କାରଣରୁ ଶିମିଳିଗଛଟିକୁ ଆଲିଙ୍ଗନ କରି ରକ୍ତାକ୍ତ ହୋଇପଡ଼ିବା ପରିବର୍ତ୍ତେ ଗଛଟିକୁ ବାରମ୍ବାର 'ଦେବୀ' 'ଦେବୀ' ସମ୍ବୋଧନ କରୁ କରୁ ବୃକ୍ଷ ମୂଳରେ ଭୂମିଷ୍ଠ ହେଲା, ଆଉ ତା'ପରେ ବୃକ୍ଷର ପାଦକୁ ଏକ ପରମ ପ୍ରେମିକ ପରି ଘନଘନ ଚୁମ୍ବନ କରିଲାଗିଲା ।

ଭୃଗୁର ଏ ମାତ୍‌ଲାମି ଚଢ଼େଇକୁ ଆଚମ୍ବିତ କରୁଥିଲା ସତ, କିନ୍ତୁ ଲଟା ଆଢ଼ୁଆଳରେ ରହି ଏ ଯାବତ୍ ଗୋଟାଏ ମଣିଷ ପିଲାର ଯାବତୀୟ ହାବଭାବକୁ ଏକଧ୍ୟାନରେ ଅନାଇ ରହିଥିବା ପଶୁଟା ପାଇଁ ସେଇ ମୁହୂର୍ତ୍ତଟି ଥିଲା ପରମ ସୁଯୋଗର ମୁହୂର୍ତ୍ତ । ଶିକାରଟିକୁ ଏଥର ଅନାୟାସରେ କବଳିତ କରିପାରିବାର ସାହସ ତା ମନରେ ବେଶ୍ ଦୃଢ଼ ହୋଇଥାଏ । ସେଥିପାଇଁ ବୁଦା ଆଢ଼ୁଆଳରୁ ବେପରୁଆଭାବେ ଫଟା ଭୂଇଁ ଆଡ଼କୁ କେଇପାଦ ଯେ ମାଡ଼ିଆସିଥାଏ ।

ଜନ୍ତୁଟାର ଏ ଧରଣର ଚାଲିରୁ ତାର ଅସଲ ମତଲବ ଠଉର କରିନେବା ପକ୍ଷୀ ପକ୍ଷରେ ବିଶେଷ କଷ୍ଟକର ନୁହେଁ । ତେଣୁ କଣ୍ଠରୁ ସ୍ୱତଃ ପ୍ରବାହିତ ସଙ୍ଗୀତର ଧାରାକୁ ସେ ଜୋର୍‌କରି ଚାପିନେଇ ଏକ ବିକଟ ଚିରଚିରା ରବରେ ଶାନ୍ତ ବାତାବରଣଟିକୁ ଛନ୍‌ଛତର କରି ପକାଇଲା । ସେ ଶବ୍ଦରେ ଜାନୁଆରଟା ଚମକି ପଡ଼ିଲା । ତାର ଜକ୍ ଜକ୍ ଆଖି

ଘୋଡ଼ାକ ଲକ୍ଷ୍ୟଭ୍ରଷ୍ଟ ହୋଇଗଲା । ଘୋର ବିରକ୍ତିକର ସେଇ ଚଢ଼େଇଟାର ସ୍ଥିତ ପ୍ରତି ସଜାଗ ହେଉ ହେଉ କିନ୍ତୁ ଟା ପଶ୍ଚାତ୍‌ପଦ ହେଲି ଓ ବୁଢା ଗ୍ରୁଇରେ ମିଶିଗଲି ।

ଭୃଗୁ ଶିମିଳିଗଛଟି ପ୍ରତି ତା ପ୍ରାଣର ସର୍ବପ୍ରାଥମିକ ଆବେଗଟିକୁ ନିବେଦନ କରିଯାଇ ଏଥର ଏକ ମୁକ୍ତ ଜଗତ ଆଡ଼କୁ ନିଜକୁ ଉନ୍ମୁକ୍ତ କରିଦେଇଥାଏ । ଏହାର ମୌଳିକ ଲକ୍ଷଣ ସ୍ୱରୂପ ସେ ତାର ଲମ୍ବ ଲମ୍ବ ହାତ ଦୁଇଟିକୁ ମୁଣ୍ଡ ଉପରକୁ ଟେକୁଥାଏ ଓ ଟିପରେ ଠିଆ ହୋଇ ଉଦ୍ଧର୍ବଙ୍କ ପରି ପବନକୁ, ତା ମୁଣ୍ଡ ଉପରର ଶୀତଳନର ପରିଚ୍ଛନ୍ନ ନେଳି ଆକାଶଟାକୁ ଧରିପକାଇବାକୁ କିଛି ସମସ୍ତ ସାଧନା ଚଳାଇଥାଏ । ପରେ ପରେ ଗୋଟିଏ ବଣୁଆ ମୂଷା ଧାଇଁପଳାଉଥିବା ଦେଖି ସେ କଅଣ କରିବ ଜାଣିନପାରି କରକର ହୋଇ ହସିଉଠୁଥାଏ ମଧ୍ୟ । କିନ୍ତୁ ପର ମୁହୂର୍ତ୍ତରେ—ସେଇ ହସଟାହିଁ ଅକାରଣ, ସତେ କି ଏଇଆ ପ୍ରମାଣ କରିଦେବା ପାଇଁ ସେ ଗୋଟିଏ କାନ୍ଦୁରା ମୁହଁ ଦେଖାଇ ଗୁରୁଆଡ଼କୁ ଅନାଇ ଦେଉଥାଏ । କିନ୍ତୁ ତାର ସେ ଅନାଇବାର ଭାବ-ଭଙ୍ଗୀରୁ କେବଳ ପକ୍ଷୀ କାହିଁକି ବୁଢା ଆଡୁଆଳର ଜାଲୁଆର୍‌ଟା ମଧ୍ୟ ଜାଣିନେଇ ପାରୁଥାଏ ଯେ ସେ ବୋକା ମଣିଷଟାର ଆଖିଦୁଇଟା ତା ଗୁରୁ ପାଖରେ ଘୂରିବୁଲୁଥିବା ଅଜସ୍ର କତା ପ୍ରତି ସମ୍ପୂର୍ଣ୍ଣ ଅନ୍ଧ ହୋଇ-ଯାଇଥାଏ ।

ଭୃଗୁର ଏଇ ଭାବାନ୍ତରରେ ଅଂଶୀଦାର ହେବାପାଇଁ ଚଢ଼େଇର ଆଉ ଧୈର୍ଯ୍ୟ ନ ଥାଏ । ନିର୍ବୋଧ ମଣିଷମାନଙ୍କର ଏପରି କ୍ଷଣିକ ଭାବାନ୍ତର ସହିତ ସେ ଅପରିଚିତ ନୁହେଁ । ଗଭୀର ଅରଣ୍ୟରେ କାଠକାଟୁଥିବା କାଠୁରିଆମାନଙ୍କ ସେ ପ୍ରାୟ ପ୍ରତିଦିନ ଦେଖେ । ହାଣ କୁରାଢ଼ିର ସହିତ ଶ୍ରେଷ୍ଠଟା କୌଣସି ଖିଅନ୍ଧା ଗଛ ଉପରେ ଚଡ଼ାଇବା ପୂର୍ବରୁ ସେମାନେ ଏହିପରି ନତମସ୍ତକ ହୋଇ ଗଛଟିକୁ 'ଦେବୀ' ବୋଲି ସମ୍ବୋଧନ କରିବାର ହାସ୍ୟାସ୍ପଦ ଦୃଶ୍ୟ ସହିତ ପକ୍ଷୀଟି ନିତାନ୍ତ ଅପରିଚିତ ନୁହେଁ । ସେହିପରି ସେ ଦେଖିଆସିଛି ଏଇ ନିର୍ବୋଧ ମଣିଷମାନଙ୍କର ଆଉ କେତେ ପ୍ରକାର ଦୁର୍ବୋଧ ବ୍ୟବହାର । ବଣ ଭିତରେ, ଝରଣାକୂଳରେ ମଦ୍ୟପ ମଣିଷମାନେ ମାତାଲ ଅବସ୍ଥାରେ କଭଲ ସ୍ୱର୍ଗରୁ ଅବତରଣ କରିଥିବା ଦେବଲୋକର ପରି ବା ଗନ୍ଧର୍ବମାନଙ୍କ ପରି ସଙ୍ଗୀତ ଓ ନୃତ୍ୟପ୍ରିୟ ପରମ ପ୍ରେମିକ ପାଲଟିଯାନ୍ତି—ଦେଖିଛି ସେ ଅନେକବାର । କିନ୍ତୁ ଏଇ ପରମ ପ୍ରେମିକ କିପରି ହଠାତ୍ ପଶୁ ପାଲଟିଯାନ୍ତି ଓ ଜଣକର କଟାମୁଣ୍ଡକୁ ଅନ୍ୟ ଜଣେ ଓଜନିଆ ଫଳଟିଏ ଗଛରୁ ତୋଳିଆଣିଲା ପରି ତୋଳିଧରି, ବଣରୁ ବାହାରି, ଜନସ୍ଥିତିରେ ବାଣ୍ଟୁଥିଲେ ସେଇ କଅଁ ଧୂଆଁ ଆଉ ଶବ୍ଦମୟ ଜନପଦଟିର ବାଗରେ—ସେ ଦୃଶ୍ୟ ମଧ୍ୟ ଦେଖିଛି ସେ । ତେଣୁ ଭୃଗୁର ନବଯୌବନର ମାତଲମିଟାକୁ ଏକ ସାମୟିକ ଖିଆଲ ବୋଲି ଧରିନେବା ଛଡ଼ା ସେଥିରେ ଆଉ କିଛି ଗୁରୁତ୍ୱ ଥିବାପରି ମନେକରିପାରୁ ନଥାଏ ପକ୍ଷୀଟି ।

କିନ୍ତୁ ସେତେବେଳକୁ ଭୃଗୁର ମାତଲମିର ଅନ୍ୟ ଏକ ଦୁର୍ବୋଧ ଦିଗ ସ୍ପଷ୍ଟ ହୋଇ

ଉଠିଆଏ । ଖଲାବାଡ଼କୁ ବହୁତ ପଛରେ ଗ୍ରାକ୍ତ ବର୍ତ୍ତିମାନ ସେ ପ୍ରାନ୍ତ ସେଇ ବ୍ୟପଦାଞ୍ଚଳର ସୀମା ଟପିଯାଉଥାଏ—ଯେଉଁଠି ହଂସ୍ରଜନ୍ତୁଟି ସମ୍ଭବତଃ ତା ପାଇଁ ମୁହଁ ମେଲକରି ଚୂପ୍‌ଗୁପ୍ ଲେପେଟେଇ ପଡ଼ିରହୁଥାଏ । କିନ୍ତୁ, ଆଶ୍ଚର୍ଯ୍ୟର କଥା, ପିଲାଟି ସେ ଦିଗରେ ଅଧିକ ଅଗ୍ରସର ହେବା ପୂର୍ବରୁ କୌଣସି ଅଜଣା କାରଣରୁ ଏକ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ବ୍ୟବହାର ପ୍ରଦର୍ଶନପୂର୍ବକ ଲଥ୍ କରି ବସିପଡ଼ିଲା ଭୂଇଁ ଉପରେ । ସେଥିପାଇଁ ଅବଶ୍ୟ ସେ ଗୋଟିଏ ସ୍ଥାନ ନିର୍ବାଚନ କରିନେଇଥିଲା ଯେଉଁ ସ୍ଥାନରେ ବସିଲେ ତାର ଆଖି ବୁଦା ଆଢ଼ୁଆଳର ହଂସ୍ରଜନ୍ତୁର ଆଖି ସହିତ ମିଶିଯାଇ ଚାରିଆଖି ହୋଇଯିବା ଆଦୌ ଅସମ୍ଭବ ନୁହେଁ ବୋଲି ପକ୍ଷୀ ନେଶ୍ ଜାଣିପାରୁଥିଲା । କିନ୍ତୁ ଏହା ସହିତ ପକ୍ଷୀର ସନ୍ଦେହ ମଧ୍ୟ ନ ଥିଲା ଯେ ନିର୍ବୋଧ ମଣିଷଟି ନିଶ୍ଚୟ ଆଖି ମେଲାକରି ଅନୁସନ୍ଧିତ୍ସୁ ଦୃଷ୍ଟିରେ ସାମ୍ନାର ବୁଦା ଭିତରକୁ ନଅନାଇ ସମ୍ଭବତଃ ତାର ଦୁଇ ଆଖିକୁ ବନ୍ଦ କରିଦେଇ ସାରିଥିଲା । ଫଳରେ ବୁଦା ଆଢ଼ୁଆଳର ହଂସ୍ରଜନ୍ତୁ ପ୍ରତି ସେ ନିଜକୁ ଏକ ସହଜ ଶିକାରରେ ପରିଣତ କରିଦେଇଥିଲା ସ୍ୱ-ଇଚ୍ଛାରେ ।

ଏକ ଭୟାବହ ପରିଣତିର ଆଶଙ୍କା ମୁହୂର୍ତ୍ତିକ ମଧ୍ୟରେ ଏକ ଚରମ ବାସ୍ତବତାରେ ପରିଣତ ହେବାକୁ ଯାଉଥିବା ଦେଖି ପକ୍ଷୀଟିର ଗ୍ରାତ ଅଶିଉଠିଲା ! ନିଜ ଆଖିଆଗରେ ଆଜୀବନ ସେ ଏହିପରି ଅନେକ ନାଟକ ଦେଖି ଆସିଥିଲା, ଯେଉଁଠି ଖାଦ୍ୟ-ଖାଦକର ଚିରନ୍ତନ ସମ୍ବନ୍ଧ ପ୍ରକଟିତ ହେବାରେ ଜୀବନର ସାର୍ଥକତା ହିଁ ପ୍ରମାଣିତ ହେଉଥିଲା । କିନ୍ତୁ ଆଜି ଏଇ ଅଭୂତ ଦୃଶ୍ୟଟି ତାର ସବୁ ବୁଝାମଣାକୁ ପ୍ରାୟ ବ୍ୟର୍ଥ କରିଦେଉଥିଲା । ବିଚକ୍ଷଣ ପ୍ରତ୍ୟୁତ୍ପନ୍ନମତିସମ୍ପନ୍ନ ମଣିଷ ଜାତିର କଅଣ ସତେ ଏପରି ଏକ ଦୁର୍ଯୋଗର ଦିନ ପହଞ୍ଚିଗଲା, ଯେଉଁଦିନ ସେ ସ୍ୱ-ଇଚ୍ଛାରେ କୌଣସି ହଂସ୍ରଜନ୍ତୁ ନିକଟରେ ନିଜକୁ ଏପରି ଅସହାୟ ଅବସ୍ଥାରେ ସମର୍ପଣ କରିଦେଇ ଏଭଳି ସ୍ଥିରତାର ସହିତ ନିଜକୁ ଜଗତ ସମ୍ମୁଖରେ ଦେଖାଇପାରେ ଯେ ସେ ବାସ୍ତବରେ ନିର୍ଭୀକ ! ଏକ ଗଭୀର ସଂଶୟାଚ୍ଛନ୍ନ ଅବସ୍ଥାରେ ପକ୍ଷୀଟି କିଛି ସମୟ ଇତସ୍ତତଃ ହୋଇପଡ଼ିଲା । ଏହା ପରେ ହଠାତ୍ ତା ଅନ୍ତରରେ ଏଯାବତ୍ ଗୁପ୍ତ ହୋଇ ଶୋଇରହିଥିବା ଏକ ସହଜାତ ପ୍ରବୃତ୍ତି ଚେଇଁଉଠିଲା ।

ନିଜର ସନ୍ତାନବର୍ଗଙ୍କୁ ଆସନ୍ନ ବିପଦରୁ ରକ୍ଷା କରିବା ପାଇଁ ଯୁଗ ଯୁଗ ଧରି ମା ଚଢ଼େଇମାନେ ଗୋଟିଏ ନିର୍ଦ୍ଦିଷ୍ଟ ଭାବରେ ଭୁଆଁ ବୁଲେଇ ଆସିଛନ୍ତି ବଣର ହଂସ୍ରତାକୁ । ଛୁଆଙ୍କ ଆଡ଼କୁ ମୁହେଁଇ ଆସୁଥିବା ସର୍ପ ବା ବନ୍ୟ-ବିଡ଼ାଲମାନଙ୍କ ଗତି ରୋଧ କରିବା ପାଇଁ ମା ଚଢ଼େଇମାନେ ସିଧା ଆଗେଇ ଆସନ୍ତି ଠିକ୍ ସେମାନଙ୍କ ମୁହଁ ପାଖକୁ, ଆଉ ସାମାନ୍ୟ ଦୂରତାରେ ରହି ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କରିଦେଲା ପରି ଲୁଚିପଡ଼ନ୍ତି ସେମାନେ ଭୂଇଁ ଉପରେ ଏତେ ଆକର୍ଷିକ ଭାବରେ ଯେ ସହଜଲବ୍ଧ ଶିକାରକୁ ଗ୍ରହଣପାଇଁ

କନ୍ତୁ ଲକ୍ଷ୍ୟଭ୍ରଷ୍ଟ ହୋଇପଡ଼େ ଅତି ଅନାୟାସରେ । ଦିଗ୍‌ଭ୍ରଷ୍ଟ କନ୍ତୁ ଏଥର ଛୁଆଙ୍କ ଗୁଡ଼ି ଆଡ଼େଇଆସେ ଭଗ୍ନପକ୍ଷ୍ୟ ମା' ପକ୍ଷୀଟି ଆଡ଼େ । କନ୍ତୁ ଏପରି ଛଳନାରେ ସିଦ୍ଧହସ୍ତା ମା' ପକ୍ଷୀମାନଙ୍କ ନିକଟରେ ହିଂସ୍ରନ୍ତା ହିଁ ପରାସ୍ତ ହୁଏ ଅବଶେଷରେ । ପାଖେଇ ଆସୁଥିବା ପଶୁ ନିକଟରୁ ଖଣ୍ଡିଉଡ଼ା ଦେଇ ମା' ପକ୍ଷୀ କ୍ରମେ କ୍ରମେ ଦୂରେଇଯାଏ । ହିଂସ୍ରତା ମା'ର ଅନୁଧାବନ କରୁ କରୁ ଖାଦକର ପ୍ରାଣରକ୍ଷା ହୁଏ ।

ଭୃଗୁର ଅଲକ୍ଷ୍ୟରେ ପକ୍ଷୀଟି ତାର ମା' ପାଲଟିଗଲେ । ଗଛଡାଳରୁ ଲଥ୍ କରି ଖସିପଡ଼ିଲା ସେ, ଆଉ ଚିଁ ଚିଁ ଶବ୍ଦକରି ନିଜ ପ୍ରତି ଦୃଷ୍ଟି ଆକର୍ଷଣ କରି ଲାଗିଲା । ଏହାପରେ ମହାପ୍ରକୃତିର ଦୁର୍ଲଙ୍ଘ୍ୟ ନିୟମଟି କାର୍ଯ୍ୟକାରୀ ହେବା ଛଡ଼ା ଗତ୍ୟନ୍ତର ନଥିଲା । ଶ୍ମଷଣକାୟ ବୁଢ଼ା ବାଘଟିଏ ଅତ୍ୟନ୍ତ ଦୟନୀୟଭାବେ ପକ୍ଷୀର ମାତୃ-ପ୍ରକୃତିର ଲୀଳାଫାନ୍ଦରେ ଆବଦ୍ଧ ହୋଇପଡ଼ିଲା । ଚଢ଼େଇଟି ବାରମ୍ବାର ଛଟପଟ ହୋଇ ଖଣ୍ଡିଉଡ଼ା ଦେଇଦେଇକା ଭୃଗୁ ନିକଟରୁ ଯଥେଷ୍ଟ ଦୂରକୁ ବାଘଟାକୁ ଭୁଲେଇ ନେଇ ଚାଲିଗଲା ।

ଅରଣ୍ୟ ସୀମାନ୍ତରେ ଉଲଗ୍ନ ବାଳକଟି ଚକା ପକେଇ ଆଖି ବୁଜି, ଦୀର୍ଘ ନିଃଶ୍ୱାସ ଧରି ବସିରହିଲା । ବାହ୍ୟ ଜଗତରେ ତାର ସେଇ ଅସହାୟ ସ୍ଥିତିକୁ ନେଇ ମହାପ୍ରକୃତି କେଉଁସବୁ ଲୀଳା ରଚନା କରିଚାଲିଥିଲା, ତାହା ଜାଣିବା ପାଇଁ ତାର ଅନ୍ତର୍ଦୃଷ୍ଟି ସେ ପର୍ଯ୍ୟନ୍ତ ପରିସ୍ଫୁଟ ହୋଇନଥିଲା । କିନ୍ତୁ ନବଯୌବନର ଆଗମନୀ ସଙ୍ଗୀତ ତା କାନରେ ଯେତିକି ଅମୃତ ବର୍ଷଣ କରିଥିଲା, ଜୀବନର ଅସଲ ସ୍ୱାଦ ଅନୁଭବ କରିବା ପାଇଁ ତାହା ଥିଲା ପର୍ଯ୍ୟାପ୍ତ ।

ଭୃଗୁ ଆଖି ଖୋଲିଲା । ସ୍ପଷ୍ଟ ଦିବାଲୋକରେ ସେତେବେଳକୁ ତା ଚତୁଃପାର୍ଶ୍ୱର ଜଗତ ଝଲମଲ ହୋଇ ଝଟକୁଥିଲା । ତା ଆଖି ମିଟ୍‌ମିଟ୍ ହୋଇଗଲେ । କିନ୍ତୁ ସେଇ ମିଟ୍‌ମିଟ୍ ଆଖିରେ ବଣ ଆଡ଼କୁ ଗ୍ୱହିଁ ସେ ଏକ ଅପୂର୍ବ ଦୃଶ୍ୟ ଦେଖିଲା । ପ୍ରଥମେ ସେ ଆଦୌ ବୁଝିପାରିନଥିଲା କଅଣ ତା ମାନେ—ବାଘଟାଏ ଗ୍ରୋଟ ପିଲାଙ୍କ ଭଳି କାହା ସାଙ୍ଗେ ଖେଳୁଚି ସେମିତି ? ସେ ଉଠି ପଡ଼ିଲା । ଏକ ଅସ୍ୱାଭାବିକ କୌତୂହଳ ତାକୁ ଆକୃଷ୍ଟ କଲା । ଯନ୍ତ୍ରବତ୍ ସେ ଚାଲିବାକୁ ଆରମ୍ଭକଲା ସେଇ ଦିଗରେ ।

ଘଟଣାସ୍ଥଳରେ ଭୃଗୁ ପହଞ୍ଚିବା ପୂର୍ବରୁ ଗୋଟିଏ ଚଢ଼େଇର ଅସ୍ୱାଭାବିକ ବ୍ୟବହାର ଓ ତା ସହିତ ଗୋଟିଏ ବେଶ୍ ବୟସ୍କ ବ୍ୟାଘ୍ରର ତତୋଽଧିକ ଅସ୍ୱାଭାବିକ ଛକାପଞ୍ଝା ଦୃଶ୍ୟ ତାକୁ ଖୁବ୍ ହାସ୍ୟାସ୍ପଦ ମନେହେଲା । କିନ୍ତୁ ସେ ଅଟକିଗଲା । ଆଶ୍ଚର୍ଯ୍ୟ ହେଲା । ତାର ମନେପଡ଼ିଲେ—ଖେଲାବାଡ଼ିରେ ବସିଥିଲାବେଳେ ଚଢ଼େଇଟା ବାରମ୍ବାର ତା ମୁଣ୍ଡ ପାଖରେ ଫୁର୍‌ର୍ ଫାର୍‌ର୍ ଉଡ଼ୁଥିବାର । ସେତେବେଳକୁ ସେ ଲଙ୍ଗଳା ହୋଇସାରିଥିଲା ଓ ଏଡ଼େବଡ଼ ଖେଲାବାଡ଼ିରେ ଏକା ଏକା ବୁଲୁଥିବାରୁ ନିଃସଙ୍କୋଚରେ ଯାହା ଇଚ୍ଛା ତାହା କରିଯାଉଥିଲା । କିନ୍ତୁ, ବର୍ତ୍ତମାନ ତାର ସନ୍ଦେହ ହେଲା—ଏଇ ଚଢ଼େଇଟା ତାକୁ ଅତି ପାଖରୁ ଥାଇ ଦେଖିନେଇଛି, ଆଉ ତା ଆଦ୍ୟଯୌବନର ସବୁ ଗୁମର ଜାଣିନେଇପାରିଛି ।

ଚଢ଼େଇଟାକୁ ନେଇ ଭୃଗୁ ମନରେ ଭୀଷଣ ଲଜ୍ଜା ଜାତ ହେଲା । ଆଉ କୌଣସି କାରଣରୁ ତାର ଡେଣା ଭାଙ୍ଗିଯାଇଚ, ଆଉ ବାଘ ହାବୁଡ଼ରେ ମଧ୍ୟ ପଡ଼ିଚ ସେ ଚଢ଼େଇ—ସେ ଦୃଶ୍ୟରୁ ପ୍ରଥମେ ସେତକ ବୁଝିପାରି ପିଲାଟିକୁ ଖୁସି ଲାଗିଲା । ସେ ଯେଉଁଠି ଠିଆହୋଇଥିଲା ସେଇଠି ରହିଗଲା ଓ ଦୃଶ୍ୟଟିକୁ ଉପଭୋଗ କରିଲାଗିଲା ।

ହିଂସ୍ର ପଶୁର ଦୃଷ୍ଟିକୁ ଯଥାସମ୍ଭବ ନିଜ ପ୍ରତି ଆକୃଷ୍ଟ କରି ରଖିବାର ଯେଉଁ ଦାୟିତ୍ୱଟି ପକ୍ଷୀ ଆପେ ଆପେ ଗ୍ରହଣକରି ନେଇଥିଲା, କ୍ରମଶଃ ତାହା ଅସମ୍ଭାଳ ହୋଇପଡ଼ୁଥିଲା । କିନ୍ତୁ ଅଦୂରରେ ଖୁଣ୍ଟଭଳି ଠିଆହୋଇ ନିର୍ବୋଧ ପରି ହସୁଥିବା ଅଭଦ୍ରା ମଣିଷ ପିଲାଟିକୁ ମଝିରେ ମଝିରେ ଅନାଇଦେଇ ସେ ବେଶି ବେଶି ଅବଶ ଅନୁଭବ କରୁଥିଲା । 'ଯା—ପଳା ! ନଙ୍ଗଳା ଟୋକା !' ଚିତ୍କାର କରୁଥିଲା ପକ୍ଷୀ, "ପଳା ସେ ନିଆଁ ଧୂଆଁ ଆଉ ଗୋଳମାଳ ଭିତରକୁ, ଯେଉଁଠି ଅନ୍ତତଃ ଆଉ କିଛି ଦିନ ବଞ୍ଚିଯିବୁ । ତତେ କିଏ କହିଲା ଋଷି ବନିବାକୁ ଏତେ କମ୍ ବୟସରୁ ? ତତେ କିଏ ଶିଖେଇଲା ଏମିତି ଛଳନା କରିବାକୁ—ଗଛକୁ 'ଦେବୀ' ବୋଲି ଡାକଦେଇ ଚଢ଼େଇମାନଙ୍କ ଗ୍ରୀତରେ ଅଯଥା ବାତ୍ସଲ୍ୟ-ମମତା ଜଗାଇବାକୁ ? ଯା ପଳା ପଳା ! ନଚେତ୍..." ହଠାତ୍ ଚଢ଼େଇଟି ଫୁର୍ ‍କିନା ଉଡ଼ିଲେ ଭୂଇଁ ଉପରୁ ଗଛଡ଼ାଳକୁ ।

ଚମକିପଡ଼ିଲା ଭୃଗୁ ।

କ୍ଳାନ୍ତ ଅବଶ ବୁଢ଼ା ବାଘଟା ଚଢ଼େଇର ମାୟାରୁ ମୁକ୍ତ ପାଇବା ମାତ୍ରେ ମୁହଁ ଫେରେଇ ଦେଖିଲା—ଠିକ୍ ତାର ହାତପାହାନ୍ତରେ ଅସଲ ଶିକାର ।

ଭୃଗୁର ଆଖି ବର୍ତ୍ତମାନ ମୃତ୍ୟୁ ସହିତ ଶ୍ରୁତଚକ୍ଷୁ । କିନ୍ତୁ ସେତେବେଳେ ସେ ବାଘକୁ ଦେଖୁନଥିଲା କି ମୃତ୍ୟୁକୁ ଚିହ୍ନୁନଥିଲା । ସେ ବିସ୍ମିତ ହେଉଥିଲା—ଚଢ଼େଇଟା ଯୋଗୁ । ମୃତ୍ୟୁ ମୁଖରୁ ଏତେବେଳ ସେଇ ଚଢ଼େଇ ତେବେ ତାକୁ ବଞ୍ଚାଇ ରଖିଥିଲା ! ସେ ଖାଲି ବିସ୍ମିତ ନହୋଇ ଏଥର ଅପୂର୍ବ ଆହ୍ଲାଦର ଢେଉ ଉପରେ ନାଚିବାକୁ ଲାଗିଲା ଖାଷ୍ ସେଇ ଚଢ଼େଇଟି ଯୋଗୁ ।

ଭୃଗୁ ଉପରକୁ ମାତ୍ର ଅଧଟିଏ ଝାମ୍ପ ମାରି ବାଘଟା ଅଟକିଗଲା । ନିଜର ଏପରି ବ୍ୟବହାରରେ ଜାନୁଆରଟା ସତେ କି ଖୁବ୍ ବିସ୍ମିତ ହୋଇପଡ଼ିଲା । ସେ ପୁଣି ଥରେ ଭୃଗୁ ଉପରକୁ ଲମ୍ଫ ଦେଲା ।

ପିଲାଟି ତଥାପି ଭୂଇଁ ଉପରେ ଠିଆହୋଇ ରହିଥିଲା । ତା ମୁଣ୍ଡ ଉପରେ, ଗଛ ଡାଳରେ ବସି ପକ୍ଷୀଟିଏ ଅଦ୍ଭୁତ ଦୃଶ୍ୟ ଆଖି ପୂରେଇ ଦେଖି ଗ୍ଲୁଲିଥିଲା । ମଝିରେ ମଝିରେ ଆଖିରୁ ଆନନ୍ଦାଶ୍ରୁ ବହିଲା ପରି ତା କଣ୍ଠରୁ ଲଳିତ ମୂର୍ଚ୍ଛନାର କୌଣସି ଏକ ସଙ୍ଗୀତ ଝରିପଡ଼ୁଥିଲା ।

ଏସବୁ ସତ୍ତ୍ୱେ ବାଘ ତଥାପି ସ୍ଥାନ ଗ୍ରତ୍ତ୍ୱ ଅନ୍ୟତ୍ର ଗ୍ଲୁଲିଯାଇ ନଥିଲା । ସେ କେବଳ ଅପେକ୍ଷମାଣ ଥିଲା—କେଜାଣି କେଉଁ ସୁଯୋଗକୁ !

# ଭକ୍ତଲୋକ

ସାଧାରଣ ବଡ଼ଗଛଟାଏ ସମ୍ଭବତଃ; କିନ୍ତୁ ଗାଁର ଅସାଧାରଣ ଲୋକେ ଏଇ ଗଛଟାକୁ କହନ୍ତି ରତ୍ନବଟ । ରତ୍ନବଟ ସିଦ୍ଧିବଟ । ଖାଲି ସିଦ୍ଧିବଟ ନୁହେଁ—ପ୍ରଳୟ ବଟ ବି ! ଅଚ୍ୟୁତାନନ୍ଦଙ୍କ ମାଳିକାବାଣୀ ଅଛି—କଳିଯୁଗ ଶେଷବେଳକୁ ଏଇ ରତ୍ନବଟ କୋଟରରୁ ଶୂନ୍ୟବାଣୀ ସ୍ଫୁରିବ । ସେ ବାଣୀ ଶୁଣାଯିବାକ୍ଷଣି ବଟତଟ ଯୋଡ଼—ଯାହା ନାଁ ରତ୍ନଯୋଡ଼—ସେ ଯୋଡ଼ ପାଣି ଉଚ୍ଛୁଳି ଉଠିବ । ପୁଣି ପାଣିତଳୁ ବାହାରିବ ବଉଳା କୁମ୍ଭୀର ବା କମ୍ଭୀର । ଖାଲି କମ୍ଭୀର ନୁହେଁ—ବାରହାତ ଲମ୍ବର ଏକ ଖଡ଼୍‌ଗ ବା କରବାଳ ମଧ୍ୟ । ବଉଳା କମ୍ଭୀରି ଏ ଖଡ଼୍‌ଗକୁ ମୁହଁରେ ଧରି ବାହାରିବ । ଏହାପରେ ବଉଳା ବାହାରିବ ରତ୍ନ-ଯୋଡ଼ର ବଢ଼ିପାଣି କାଟି ସିଧା କୋଡ଼ିଏ ମାଇଲ ତଳହଟି ଆଡ଼କୁ; ଅର୍ଥାତ୍ ଶାରଳା ଠାକୁରାଣୀଙ୍କ ସମୀପକୁ । ଶାରଳାଙ୍କ ପାଦତଳେ ପ୍ରଳୟର ସେହି ମୁଖ୍ୟ ଆୟୁଧ ଖଡ଼୍‌ଗଟିକୁ ସମର୍ପଣ କଲାପରେ ବଉଳାର କାମ ଖତମ୍ । ଏହାପରେ ଦେବୀ ଧାରଣ କରିବେ ବିବିଧ ରତ୍ନଖଚିତ ସେଇ ଚରମ ମାରଣାସ୍ତ୍ରଟିକୁ । ସେଇଠୁ କାମ ଫତେ କଳିଯୁଗର । ଆରମ୍ଭ ହେବ ମ୍ଳେଚ୍ଛସଂହାର । ଗୋଟି ଗୋଟି କରି, କଳିଯୁଗର ମ୍ଳେଚ୍ଛ ଅର୍ଥାତ୍ ଧର୍ମବିରୋଧୀ ଯାବତ ଦାନବ ମାନବ ଯେ କେହି ନାଶଯିବେ ଦେବୀଙ୍କ ଖଡ଼୍‌ଗ ପ୍ରହାରରେ । ପୃଥିବୀ ମ୍ଳେଚ୍ଛଶୂନ୍ୟ ହେବ, ମିଥ୍ୟାଶୂନ୍ୟ ହେବ । ସେଇଠୁ ଆରମ୍ଭ ହେବ ସତ୍ୟଯୁଗ ।

ନାରେଣା, ଭଲ ନାଁ ନାରାୟଣ, ତାଙ୍କ ଗାଁ ରତ୍ନବଟ, ରତ୍ନଯୋଡ଼, ବଉଳା କମ୍ଭୀର, ବାରହାତ ଖଡ଼୍‌ଗ ପ୍ରଭୃତି କିମ୍ବଦନ୍ତୀଗୁଡ଼ିକୁ ପିଲାଦିନୁ ଜାଣିଥାଏ ଖୁବ୍ । ଯେତେବେଳେ ସେ ଅଠ ସାନ ପିଲାଟିଏ ହୋଇଥିଲା, ସେତେବେଳେ ରତ୍ନଯୋଡ଼ ପାଣିକୁ ଗୋଡ଼ ବଢ଼ାଉ ନଥିଲା ଭୟରେ । ବଡ଼ ବଡ଼ ପିଲାମାନେ ଯୋଡ଼ ପାଣିରେ ଗାଧୋଇଲାବେଳେ ଗଣ୍ୟମାନ୍ୟ ଲୋକେ ସେବାଟେ ଗ୍ଲଲି ଯାଉ ଯାଉ ସତର୍କ କରି ଦେଉଥିଲେ—"ହେ ସେତକ ସେତକ, ବେଗି ଭିତରକୁ ପହଁରାପହଁରି କରିବନାହିଁଟି ! ବଉଳା କମ୍ଭୀର କାନରେ ଯଦି ବାଜିଯିବ ନା ତମ ସୋରଗୋଳ—ସିଧା ନେଇ ଗ୍ଲଲିଯିବ ପାତାଳପୁରକୁ !"

---

ପାଞ୍ଚଜନ୍ୟ, ଫେବୃଆରି ୧୯୮୨

ନାରେଣାର ବନ୍ଧୁ ଶାଣ୍ଡେଇଥିଲେ । ରହୁବନ୍ଦ ମୂଳ ଯେ ଯୋଡ଼ଟାକୁ ସେ ଅବକଳ ସେମିତି ଖାତିର କରୁଥିଲା ପିଲାଦିନେ ଯେମିତି ବ୍ରଜବନର ଗୋପବାଳକମାନେ ଖାତିର କରୁଥିଲେ ଆଉ ପ୍ରାଣରେ ଡରୁଥିଲେ କାଳିନ୍ଦୀ ହ୍ରଦକୁ—କୃଷ୍ଣଙ୍କ କାଳୀୟ ଦଳନ ପର୍ବ ପୂର୍ବରୁ ।

କିନ୍ତୁ ଏସବୁ ଥିଲା ସେଇ ପିଲାଦିନର କଥା ।

ନାରେଣା ବଡ଼ହେଲା । କେମିତି କେଜାଣି ବଡ଼ ହେବା ମାତ୍ରେ ଗାଁର ରହୁବନ୍ଦ, ବିଶେଷତଃ ରହୁଯୋଡ଼ ସମ୍ପର୍କରେ ପିଲାଦିନୁ ଶୁଣିଆସିଥିବା ଯାବତ ଭୟଭ୍ରାନ୍ତ ଏପରିକି ସମ୍ମାନବୋଧ ମଧ୍ୟ ଉଭେଇଗଲା ତା ମୁଣ୍ଡରୁ । ଖାଲି ସେତିକି ନୁହେଁ, ଗାଁର ଯୁବସଂଘର ଜଣେ ନେତା ଭାବରେ ନାରେଣାକୁ ଏପରି ଅନେକଗୁଡ଼ିଏ କାମ କରି ଦେଖେଇବାକୁ ପଡ଼ିଲା, ଯଦ୍ୱାରା ତା ସାଙ୍ଗର ଡରୁକୁଳା ବେରୁକୁଳା ଯୁବକଙ୍କ ମନରୁ ବହୁ ପ୍ରକାର ଭୟ ଦୂର କରାଯାଇପାରିଥିଲା ମଧ୍ୟ । ବିଶେଷତଃ ଗାଁର ଟୋକାମାନଙ୍କ ମନରେ ତଥାପି ଟଙ୍ଗଟଙ୍ଗ ହେଉଥିବା ଧର୍ମଭୟକୁ ଦୂର କରିବା ପାଇଁ ନାରେଣାକୁ ବହୁ ବିପଜ୍ଜନକ କାର୍ଯ୍ୟ କରିବାକୁ ପଡ଼ିଥିଲା ମଧ୍ୟ । ସେସବୁ କାର୍ଯ୍ୟର ବିବରଣୀ ପ୍ରକାଶ କଲେ ଧ୍ରୁବତ ଅଚ୍ୟୁତାନନ୍ଦଙ୍କ ମାଳିକାଠୁଁ ବଡ଼ ଆଉ ଏକ ମାଳିକା ରଚିତ ହୋଇପାରନ୍ତା ସମ୍ଭବତଃ ।

ତେବେ, ଗାଁର ଯୁବସଂଘର ଗଣ୍ୟମାନ୍ୟ ନେତାଭାବେ ସେଯାବତ୍ ପରିଚିତ ଓ ପ୍ରତିଷ୍ଠିତ ହୋଇପାରିଥିବା ସାହସୀ ଯୁବକ ନାରେଣାର ଧର୍ମଭୟ ବିରୋଧକାରୀ ବିଭିନ୍ନ ଲୀଳାଗୁଡ଼ିକ ମଧ୍ୟରେ ତାର ସର୍ବଶ୍ରେଷ୍ଠ ଲୀଳାଟିକୁ ଏଠାରେ ପ୍ରକାଶ କଲେ ଯଥେଷ୍ଟ ହେବ ।

ସେଦିନ ନାରେଣା ମୁଣ୍ଡରେ କଥାଟା କେମିତି ପଶିଲା କେଜାଣି—! ଗାଁର ଯୁବସଂଘକୁ ଆହ୍ୱାନ ଦେଇ ସେ ଘୋଷଣାଟିଏ କରିଦେଲା—

"ମୋ ଜୀବନର ଏକମାତ୍ର ବ୍ରତ ତମମାନଙ୍କ ମୁଣ୍ଡରୁ କଲ୍କି ଭୟ ଛଡ଼େଇବ କେମିତି ସେଇଆ । ଆଚ୍ଛା, କହିଲ, ତମେସବୁ ତଥାପି ବିଶ୍ୱାସ କରୁଚ କଳିଯୁଗ ବୋଲି ଗୋଟାଏ କିଛି ଅଛି ? ସେ ଯୁଗ ସରିବ, ସେଇଠୁ ଆସିବ ସତ୍ୟଯୁଗ ଏଁ ?"

ନାରେଣାର ଏ ଅଜବ ପ୍ରଶ୍ନ ଯୁବସଂଘକୁ ବିବ୍ରତ କଲା ।

"କଳିଯୁଗ ନାହିଁ ତ ଏସବୁ କାଣ୍ଡ କାରଖାନା ଘଟୁଚି କେମିତି ?"—ଯୁବସଂଘ ଓଲଟି ପ୍ରଶ୍ନ କଲା ନାରେଣାକୁ ।

"କଅଣ ଘଟୁଚି ?"—କଟମଟ କରି ଗୁହିଁଲା ନାରେଣା ଗୋଟି ଗୋଟି କରି ଗାଁ ଟୋକାଙ୍କ ମୁହଁକୁ, ଆଉ ପଗ୍ଡରିଲା, "କଣ ଘଟଉଚି ? କଳିଯୁଗ ନା ସତ୍ୟଯୁଗ ?"

"ବା"—ନାରେଣାର ସାଙ୍ଗ ଅଥଚ ନେତୃତ୍ୱ ପର୍ଯ୍ୟାୟରେ ଠିକ୍ ତା ତଳ ସ୍ତରର ଜଣେ ଶକ୍ତିଶାଳୀ ଯୁବକ ମାଧିଆ, ଭଲ ନାଁ ମାଧବ ସାଁନ୍ତରା, ସମୁଦାୟ ପ୍ରସଙ୍ଗଟାର ଛିଡିକୁ

ଅସ୍ୱୀକାର କଲାପରି ପୁଣି ଥରେ "ବାଃ" ବୋଲି ଉଚ୍ଚାରଣ କରି କହିଲା—"ସତ୍ୟଯୁଗ, ସତ୍ୟଯୁଗ । କଳିଯୁଗ, କଳିଯୁଗ । ସତ୍ୟର ପ୍ରକୃତ ହେଲା ସତ୍ୟ । କଳିର ପ୍ରକୃତ ମିଛ । ସତ କେମିତ ମିଛ ଘଟେଇବ ? ଆଜିକାଲି ଯାହା ଘଟୁଚ ସେଗୁଡ଼ାକ ମିଛ । କହିଲ—ସତ ଘଟଣା କୋଉଠି ହେଲେ ଗୋଟିଏ ଘଟିବାର ଦେଖୁଚ ?"

"ତା ମାନେ ? ଏ ଯୋଉ ଘଟଣା ଆମେ ଖବରକାଗଜ ରେଡ଼ିଓରୁ ପଢ଼ୁଛେ ଶୁଣୁଛେ—ମଣିଷ ଚନ୍ଦ୍ରକୁ ଗଲା, ମଣିଷ ଗୋଟାଏ ଡୁଲଡଙ୍ଗା ନେଇ ସମୁଦ୍ର ପାରି ହୋଇଗଲା—ଏଗୁଡ଼ାକ ସତ ଘଟଣା ନୁହଁ, ମିଛ ?"—ନାରେଣା ସିଧା ଅନେଇଲା ଏଥର ମାଧିଆ ମୁହଁକୁ ଆଉ ପଚାରିଲା,"ଖାଲି ସେତକି ନୁହଁ—ଖବର କାଗଜ ରେଡ଼ିଓରୁ ଯୋଉ ଅଘଟଣ ସବୁ ପଢ଼ୁଚ ଶୁଣୁଚ—ଶାଶୁ ଶଶୁର ସ୍ୱାମୀ ତନିହେଁ ମିଶି ନୂଆ ବୋହୂକୁ ପୋଡ଼ି ମାରିଦେଉଛନ୍ତି କିମ୍ବା ପିଇ ଡାଳ, ଡକାଏତମାନେ ଗାଁରେ ପଶି ଶହେ ଲୋକଙ୍କୁ ଘରେ କବାଟ କିଳି ଲଗାଇଦେଇଗଲେ ଗୋଟାକୁ ଗୋଟା—ଏଗୁଡ଼ାକ ମିଛ ?"

ମାଧିଆ ମୁହଁ ବୁଲେଇଦେଲା । ନାରେଣାର ଆଖି ଯୋଡ଼ାକୁ ତାର ଭାରି ଡର । କିନ୍ତୁ ମୁହଁ ଆଡ଼ କରି ନେଇ ମାଧିଆ ଜବାବ ଦେଲା—

"ଗୋଟାଏଅଡ଼ୁ ଦେଖିଲେ—ସବୁ ମିଛ ! ସବୁ ମାୟା ! ଆମର ଏଠି କିଏ ଦେଖିଚି ଆଖିରେ ମଣିଷ ଚନ୍ଦ୍ରକୁ ଗଲା କି ନଗଲା ? ଆମର ତ ଏଠି ରକ୍ତଯୋଡ଼ଟା ଅଛି ଯେ ସ୍ୱାଗଣ୍ଡପାଣି କୁଆଡ଼େ ପାତାଳକୁ ଫୁଟିଚି ବୋଲି କହନ୍ତି ସେ ସେ କଥା ସତ କି ମିଛ ଜଣାନାହିଁ ଆମକୁ । ଏଥିରେ ମଣିଷ ଚନ୍ଦ୍ରକୁ ଗଲା ନଗଲା, ସେକଥା ସତ କି ମିଛ କି ଯାଏ ଆସେ ଆମର ।"

"ଠିକ୍ ଅଛି ତାହେଲେ—" ନାରେଣା ଏଥର ମାଧିଆକୁ ଛାଡ଼ି ବୁଲିବୁଲି ନଘା ପକେଇଲା ଯୁବସଂଘର ସଭ୍ୟମାନଙ୍କ ମୁହଁଗୁଡ଼ାକ ଉପରକୁ । ସେଇଠୁ ହଠାତ୍ ଘୋଷଣା କରିଦେଲା—"ଯାଅ, ଖବର ଦିଅ ଆଖ ପାଖ ସବୁ ଗାଁରେ—କାଲି ଗାଧୁଆବେଳକୁ ଆସନ୍ତୁ ସମସ୍ତେ ରକ୍ତଯୋଡ଼ କୂଳକୁ । ଯୋଡ଼ତଳୁ ମାଟି ଆଣି ଦେଖେଇ ଦେବ ନାରେଣା ସମସ୍ତଙ୍କ ଆଖି ସାମ୍ନାରେ ! ତମ ମୁଣ୍ଡରୁ କଳ୍କୀ ଭୂତ ନଗଲାଯାଏ ଗାଁରେ ଆଉ କିଛି ଉନ୍ନତମୂଳକ କାମ ହବନାହିଁ—ହବନାହିଁ ଆଦୌ !"

ପରଦିନ ସକାଳ ଗାଧୁଆବେଳ । ମାଳିକା ପ୍ରସିଦ୍ଧ ରକ୍ତବଟ ମୂଳରେ ପ୍ରବଳ ଜନସମାଗମ । ଯୋଡ଼ର ଉଭୟ କୂଳରେ ଆବାଳବୃଦ୍ଧବନିତା ଭିଡ଼ିଥାନ୍ତି ଆଟପଟାଳି ।

ନାରେଣା ସେତେବେଳକୁ ପଶିଯାଇ ସାରିଲାଣି ପାଣି ଭିତରେ । ଯୋଡ଼ର ଆଖିଭଲା ସେଇ ଭୟଙ୍କର ଗଣ୍ଡ ଯୋଉଠି ପାଣିର ରଙ୍ଗ ଗାଢ଼ କଳା—କଳାଗୁମର, ସେଇ ଆଡ଼କୁ ତୀର ବେଗରେ ଛୁଟି ଚାଲିଥାଏ ନାରେଣା ଜଣେ ଏକ୍ସପାର୍ଟ ପହଁରାଳି ଭଳି ।

ନାରେଣାର ଗତି ଓ ତାର ଲକ୍ଷ୍ୟସ୍ଥଳ—ଉଭୟଙ୍କୁ ମିଶେଇ ଦେଖଣାହାରମାନେ କଥାବାର୍ତ୍ତା ଚଳେଇଥାନ୍ତି ନିଜ ଭିତରେ—"ଗନ୍ଧ, ଆଉ ଟିକିଏ ସନ୍ତ୍ରାଡ କର। ସେ ଯାଇ ପହଞ୍ଚୁ ଆଗ ସେ ଗଣ୍ଡ ଧାରରେ ! ଟା'କୁକନା ଶବ୍ଦଟାଏ ନଶୁଣିବ ଯଦ—ବଉଳା କମ୍ଭୀରର ଶିକାର ଧରିବା ବାଗ ଦେଖିଛ ! ଝିଟିପିଟି ଯେମିତ ଧର ପକାଏ ପୋକକୁ..."

କନ୍ତୁ ହଠାତ୍ ଏସବୁ ଭିତର କଥାବାର୍ତ୍ତାକୁ ଚପେଇ ଦେଇ ଉଠିଲା ଉପରକୁ ଗୋଟାଏ ପ୍ରବଳ ଆର୍ତ୍ତନାଦ ଠିକ୍ ହେଉଥିବାବେଳେ, ଯେତେବେଳେ ନାରେଣା ଯାଇ ପହଞ୍ଚିଗଲା ଗଣ୍ଡର ଆଖି ଭ୍ରୂଲତା ପାଖରେ।

"ହରିବୋଲ ହରିବୋଲ ! ରକ୍ଷାକର ରକ୍ଷାକର ! ହେ କଲ୍କୀ ଦେବତା, ହେ ବଉଳା କମ୍ଭୀର ମହାପୁରୁ—କ୍ଷମାକରିଦଅ କ୍ଷମାକରିଦଅ ! ହେ ରହିବଟ ସିଦ୍ଧ ଗୋସେଇଁ ଟୋକାଟାକୁ ସାହାପକ୍ଷ ହୁଅ—ସାହାପକ୍ଷ ହୁଅ !"

ମଣିଷ କଣ୍ଠର ହରିବୋଲ ହୁଳହୁଳି ଆଉ ଆର୍ତ୍ତ କରୁଣ ପ୍ରାର୍ଥନାର କି ଅଦ୍ଭୁତ ବଳ ସେତିକବେଳେ ଯାଇ ଜଣାପଡ଼ିଲା।

ନାରେଣା ଯୋଡ଼ର ଗମ୍ଭୀର ଗଣ୍ଡ ଭିତରକୁ ବୁଡ଼ିଗଲା। କନ୍ତୁ ବଉଳା କମ୍ଭୀର କଛି କଲା ନାହିଁ ତାର। ଓଲଟି ପିଠିରେ ବସେଇ ଉଠେଇ ଆଣିଲା ସିଧା ପାଣିଲରୁ—ନାରେଣା ଭସି ଉଠିଲା ପାଣି ଉପରକୁ।

କନ୍ତୁ ଦେଖିଡ ସେ ହୁଣ୍ଡା ଟୋକାର ଗର୍ବକୁ ! ପାଣି ତଳୁ ଉପରକୁ ଉଠିବାକ୍ଷଣି ମୁଠାଏ କାଦୁଅ ହାତରେ ମୁଠେଇ ଉପରକୁ ଟେକି ଦେଖେଇଦେଲା ସମସ୍ତଙ୍କୁ। ସେଇଠୁ ସାର ପର ପାଣି ଭାଙ୍ଗି ଭାଙ୍ଗି ନାନା ଢଙ୍ଗର ପହଁରା କୌଶଳ ପ୍ରଦର୍ଶନ କର ସେ ଆସି ପହଞ୍ଚିଗଲା କୂଳରେ; ଆଉ ଲୋକଙ୍କୁ ଶୁଣେଇ ଦେଇ କହିଲା, "ଦେଖିଲ ! ତମ କଲ୍କୀ ଦେବତା କୁଆଡ଼େ ପଳେଇଗଲେ ଦେଖିଲ ? ବଉଳା କମ୍ଭୀର ବାରହାତ ଝଣ୍ଡା—ଫୁଃ !"

ଏତିକବେଳେ ନାରେଣାର କାନରେ ପଡ଼ିଲା ଲୋକଙ୍କର ମତାମତ, "ଶଳାଟା ମରଯାଇଥାନ୍ତା, ପରମାୟୁ ଜୋର୍ ! ଖାଲି ସେତିକ ନୁହେଁ, ଲୋକେ କମି ପ୍ରାର୍ଥନା କଲେ, ଠାକୁର ଶୁଣିଲେ, ବଞ୍ଚିଗଲା। ବଢ଼େଇ ବଳଆର।"

ତା ଅର୍ଥ—ଲୋକେ ନାରେଣାର ଯେ ସାହସକୁ ଆଦୌ ଗଣି କଲେ ନାହିଁ ବ୍ୟକ୍ତିଗତ ସାହସ ବୋଲି। ଲୋକଙ୍କ ସମ୍ମିଳିତ ପ୍ରାର୍ଥନାହିଁ ନାରେଣାର ସାହସର ପ୍ରମାଣ—ଏଇ ସିଦ୍ଧାନ୍ତରେ ଉପନୀତ ହୋଇ ସାରଥିଲେ ସେଦିନ ସମସ୍ତେ। —ବିଶେଷତଃ ଗାଁର ଯୁବସଂଘର ଟୋକାମାନେ ବି ସେଇଆ କହିଲେ।

ନାରେଣା ରହିଯୋଡ଼ ପାଣିରୁ ସେପର୍ଯ୍ୟନ୍ତ ପୂରାପୂର ପୋଛିପୋଛି ହୋଇ କୂଳର ଶୁଖିଲା ମାଟି ଉପରକୁ ଉଠିନଥାଏ।

ହଠାତ୍ ଖୁଙ୍ଗିଯାଉଥିବା ଦର୍ଶକମଣ୍ଡଳୀକୁ ପୁନଶ୍ଚ ଚମତ୍କୃତ କରିଦେଲା ନାରେଣା— "ଶୁଣ !", ସେ ଘୋଷଣା କଲା, "ଏଥର ନାରେଣା ପାଇଁ ହରିବୋଲ୍ ନାହିଁ କି ହୁଳହୁଳି ନାହିଁ । ସମସ୍ତେ ଚୁପ୍ ହୋଇ ଦେଖ । କେହି ଡାକ ନାହିଁ ଠାକୁରଙ୍କୁ । ଯୋଡ଼ତଳୁ ମାଟି ପୁଣି ଥରେ ଆଣି ପାରିବ କି ନାହିଁ ଦେଖ ! ଏଥର ଯଦି ମାଟି ଆଣେ, ତେବେ ସେ ମୋ ବଳରୁ ନା ତମ ପ୍ରାର୍ଥନା ବଳରୁ ?"

କହୁ କହୁ ନାରେଣା ଖେହମାଛ ଭଳି ପାଣିରୁ ଶୂନ୍ୟକୁ ଡେଇଁ ପୁଣିଥରେ ପଶିଗଲା ପାଣି ଭିତରକୁ ।

ମାଳିକା ବିଖ୍ୟାତ ରହୃଯୋଡ଼ର ଜନାକାଙ୍କ୍ଷୀ ଉଭୟ ପାର୍ଶ୍ୱ ସ୍ତବ୍ଧ । ଯୋଡ଼ର ଶୀତ-ଦହନଆ ନେଳୀ ପାଣିର ନେତ୍ରଟି ମଧ୍ୟ ଅପଲକ । ସେ ନେତ୍ରରେ କୂଳର ମଣିଷ, ଗଛ, ସୂର୍ଯ୍ୟ, ଉଡ଼ନ୍ତା ଚଢ଼େଇ, ପଦ୍ମ—ସମସ୍ତଙ୍କ ପ୍ରତିବିମ୍ବ ଛିଥର ।

ନାରେଣା ଗୁଡ଼ାଏ ବାଟ ବୁଡ଼ାପହଁରି ମାରି ସିଧା ଉଠିଲା ଯାଇ ଗଣ୍ଡ ଭିତରେ । ଗଣ୍ଡରେ ଉଠି ଥରେ କାନ ପାରି ଶୁଣିଲା ସେ କୂଳର ଲୋକମାନଙ୍କ କଥାବାର୍ତ୍ତା । ଲୋକେ ଚୁପ୍‌ଚାପ୍ । କିନ୍ତୁ କେତେଜଣ ମୁଖିଆ ବେଡ଼ ହଲେଇ ପାଟି କରୁଥିବା ପଡ଼ଲା ତା କାନରେ—"ଖବରଦାର୍ ! ହରିବୋଲ୍ ନାହିଁ କି ହୁଳହୁଳି ନାହିଁ ! କେହି ଡାକ ନାହିଁ ଠାକୁରଙ୍କୁ । ସେ ହୁଣ୍ଡା ମରିବ ତ ମରୁ, ବଞ୍ଚିବ ତ ବଞ୍ଚୁ । ତା' ଲାଗି ଯଦି କେହି ପାଟି ଫିଟେଇବ ସିଧା ଜୋରିମାନା !"

ନାରେଣା ଆଶ୍ୱସ୍ତ ହେଲା । ଏଥର ଗଣ୍ଡରୁ ମାଟି ଆଣି ଦେଖେଇଲେ କେହି କହି ପାରିବ ନାହିଁ—ତୋର ଛାତି ନୁହଁ—ତୋ ଲାଗି ଅନ୍ୟ ଲୋକଙ୍କ ପ୍ରାର୍ଥନାର ଫଳ ଏ !—କେହି କହିପାରିବ ନାହିଁ—ଭାବିଲା ନାରେଣା ।

ଗଣ୍ଡ ଭିତରେ ପହଞ୍ଚି ନାରେଣା କୂଳର ଲୋକଙ୍କ ଆଡ଼କୁ ଚାହୁଁଥିବାର ଦେଖି ମୁଖିଆମାନେ ଆହୁରି ଜୋର୍‌ରେ ପାଟିକରିଉଠିଲେ—"କେହି ଡାକ ନାହିଁ ଠାକୁରଙ୍କୁ । ଦେଖାଯାଉ ମାଳିକା ବଚନ ସତ କି ମିଛ । ଧର୍ମ ଅଛି କି ନାହିଁ ପରଖାଯାଉ ଗୋଟାଏ ଥର. . ."

ନାରେଣା କାନରେ ଏହିପରି ବାଜୁଥାଏ ତାଙ୍କ କଥା—। ଟୁବ୍‌କନା । ଏଥର ବୁଡ଼ିଗଲା ସେ ସିଧା ଗଣ୍ଡ ତଳକୁ ।

ରହୃଯୋଡ଼ର କଳାଗୁମର ଆଖି ଭଳି ଗଣ୍ଡ ପାଣି ତଳେ ନାରେଣାର ମୁଣ୍ଡବାଳ କେବଳ ଅଦୃଶ୍ୟ ହୋଇଛି କି ନାହିଁ ହଠାତ୍ ଗୋଟାଏ ନାରୀ କଣ୍ଠର ହାହାକାର ଶୁଣାଗଲା । ମୁଖିଆମାନେ ବେଡ଼ ହଲେଇ ଚହ୍ଳକି ଉଠିଲେ—"ଚୁପ୍ ଚୁପ୍ ଯାଉ ! ସେ ମରୁ । ପାତାଳକୁ ଯାଇ ମରୁ କି କିମ୍ଭୀର ମୁହଁରେ ଯାଉ ତମେ କିଏ ତା ଲାଗି—"

କିନ୍ତୁ ସ୍ତ୍ରୀଲୋକଟି—ନାରେଣାର ମା ନୁହଁ କି କେହି ନୁହଁ—ମୁଖିଆମାନଙ୍କୁ ଅନୁନୟ ହୋଇ କହିଲେ, "ଆରେ ବାପ ! ପିଲାଟାକୁ ଏକୁଟିଆ ଛାଡ଼ିଦେଲ ! କି ଅଧର୍ମ ! ମଣିଷ ପିଲାଟାକୁ ଏକା ବାଡ଼େ ରଖିଦେଇ ଆମେ ଆର ବାଡ଼ରେ ଠିଆହୋଇ କହୁଥିବା — ମର ! ମର !—ଆଉ ତେଣେ ସେ ଯିବ ଏକା ପଡ଼ାଶିବା ପେଇଁ ଭଗବାନ ଅଛନ୍ତି କି ନାହିଁ—ଧର୍ମ ଅଛି କି ନାହିଁ ଦେଖିବାକୁ ପାତାଳପୁରକୁ ! ଆରେ ଏ ପାପ ତାକୁ ଲାଗିବ ନାହିଁରେ ବାପ—ଲାଗିବ ତମମାନଙ୍କୁ !"

କହୁ କହୁ ସ୍ତ୍ରୀଲୋକଟି ବାଡ଼ପାଖିରେ ଡକାପକେଇଲେ—"ରକ୍ଷାକର ! ରକ୍ଷାକର ! ହେ ରଘୁବଟେ ! ହେ ରଘୁବଟେ !"

ଏଣେ ଗ୍ରୁତରୁ ଦମ୍ ଛୁଟିଛି କି ନାହିଁ ତେଣେ ଗଣ୍ଡ ଭିତରେ ନାରେଣାର ମୁଣ୍ଡ ଦେଖାଦେଲା । ପାଣିତଳୁ ଉଠି, ମୁହଁ ଉପରେ ଜଗିଡ଼ ପଡ଼ୁଥିବା ପାଣିଧାର ଗୁଡ଼ାକୁ ଫୁଫୁକାର କରି ଆଡ଼ୋଉ ଆଡ଼ୋଉ ତା ହାତ ପୃଥିବୀରେ ଉଠିଲା ମୁଠାହୋଇ ଉପରକୁ ।

ଦର୍ଶକମାନେ ସ୍ତବ୍ଧ ତଟସ୍ଥ । ସମସ୍ତେ ଦେଖିଲେ—ନାରେଣାର ହାତ ମୁଠାଟି ଫିଟିଯିବାକ୍ଷଣି ମେଞ୍ଚାଏ ପଙ୍କ ଅପ୍‌କନା ଖସିପଡ଼ିଲା ପାଣିକୁ ।

ସେଇଠି, ସେତିକିରେ କଥା ଛିଣ୍ଡିଗଲା ସବୁ—ବୁଝିନେଲା ନାରେଣା । ଗ୍ରୁତରେ ତାର ଅଦମ୍ୟ ୱୀରତ୍ୱର ଆନନ୍ଦ । କଳ୍କି ଅବତାର, ବଉଲା କିମ୍ବୀର, ବାରହାତ ଖଣ୍ଡା — ଅବଶ୍ୟ ଏ ବିଷୟଗୁଡ଼ିକ ଭାବୁ ନଥିଲା ସେ ସେତେବେଳେ । ତାର ଏକମାତ୍ର ଆନନ୍ଦ — ଏଥର କେହି କହିବେ ନାହିଁ ଯେ ଏ ୱୀରତ୍ୱ, ଏ କୃତିତ୍ୱ ଏକା ତାର ନୁହେଁ, ଆଉ କାହାର । ଏଥର ତାଲାଗି କେହି ଡାକିନାହାନ୍ତି ଠାକୁରଙ୍କୁ । ଏଥର ତ କେହି କହିବ ନାହିଁ ଗଲାଥର ଭଳି — ପରମାୟୁ ଜୋର୍, ଲୋକେ କମି ପ୍ରାର୍ଥନା କଲେ ! ଠାକୁର ଶୁଣିଲେ — ଇତ୍ୟାଦି ଇତ୍ୟାଦି । ଏଥର ତାହେଲେ ଆଉ ଅପ୍ରମାଣ ରହିଲା କେଉଁଠି ଯେ ମଣିଷ ହିଁ ସବୁ; ଭଗବାନ ଭଗବାନ, ମାଳକା ଫାଳକା ସବୁ ମିଛ, ସବୁ ବାଜେ କଥା !

କିନ୍ତୁ ସେପର୍ଯ୍ୟନ୍ତ ନାରେଣାର ସ୍ତବ୍ଧ ଦର୍ଶକମାନେ ଟୋକାଟାକୁ ଶୁଣେଇ ଦେଇ ନଥିଲେ ସେମାନଙ୍କର ମନ ଭିତରେ ସେ ପର୍ଯ୍ୟନ୍ତ ଖୁଜୁ ଖୁଜୁ ହେଉଥିବା ସେଇ ମର୍ମକଥା ପଦଟା । ସେମାନେ ଅପେକ୍ଷା କରୁଥିଲେ ଟୋକାଟା ଆସୁ କୂଳକୁ । ଥଳରେ ଲାଗୁ ଆଗ । ସେଇଠୁ ବିଚାର ହେବ ପ୍ରମାଣ ଅପ୍ରମାଣ କଥା ।

ନାରେଣା ସେତେବେଳକୁ ଗଣ୍ଡ ଛାଡ଼ ବେଶ୍ କିଛିବାଟ ଲାଗି ଆସିଲାଣି କୂଳ ଆଡ଼କୁ । ସେ ପହଁରୁଥାଏ ଚିତ୍ ପହଁରା । ସମ୍ଭବତଃ ଚେର୍‌ବେଲ ପହଁରା ପହଁରି ବୁଡ଼ାବୁଡ଼ି କରିବାରୁ ତାର ଦମ୍ ଛୁଟି ଅାସିଥାଏ ଅଳ୍ପ ବହୁତେ । ସେଥିପାଇଁ ଚିତ୍ ହୋଇ ପାଣିରେ ପଡ଼ି ଧୀରେ ଧୀରେ ଆହୁଲେଇ ଆହୁଲେଇ ଆସୁଥାଏ ସେ କୂଳ ଆଡ଼କୁ ।

କିନ୍ତୁ ଇତି ମଧ୍ୟରେ କୂଳରେ ଯୁବକସଂଘର ଟୋକାମାନେ ଗାଁର ପୁରୁଣା ପୁରୁଣା ଲୋକଙ୍କ ସାଥିରେ ଲଗେଇଦେଇ ସାରିଥାନ୍ତି ଏକ ନୂଆ ନାଟ । ନାରେଣୀର ସାଙ୍ଗ, ନେତୃତ୍ୱ ପର୍ଯ୍ୟାୟରେ ଠିକ୍ ନାରେଣୀ ତଳକୁ ଯୁବକସଂଘର ଦ୍ୱିତୀୟ ନେତା ମାଧିଆ ସେତେବେଳକୁ ବଡ଼ପାଟି କରି ଗାଁର ବୁଢ଼ା ବୁଢ଼ା ପୁରୁଖା ପୁରୁଖା ଲୋକଙ୍କୁ ଜବତ୍ କରିବା ଲକ୍ଷ୍ୟରେ କହୁଥାଏ—"ନା ନା—ସେ କଥା ହେବନାହିଁ—ସେ ତ ଶୁଣି ନାହିଁ । ତମେ ଏଣେ ଉପରେ ଥାଇ ତାପେଇଁ ମନେ ମନେ କି ଶୁଣେଇ ଶୁଣେଇ ଠାକୁରଙ୍କୁ ଡାକୁଥିଲ କି ଯମକୁ ଡାକୁଥିଲ ସେତ ଶୁଣିନାହିଁ । ସେ ତାର ନିଜ ବଳରେ ଗଲା । ତମକୁ ଦି'ଥର ମାଟି ଆଣି ଦେଖେଇଦେଲା । ସେଥିରେ ପୁଣି ତମର ସନ୍ଦେହ ! କଅଣ ନା ତମ ପ୍ରାର୍ଥନା ଶୁଣି ବଢ଼ିଲା କୁମ୍ଭୀର କିଛି କରୁନାହିଁ, ଓଲଟି ପିଠିରେ ବସାଇ ଆଣି ଛାଡ଼ିଦେଇ ଯାଉଚି ପାଣି ଉପରେ ! ଧାତ୍‌ତେରି ! ଧନ୍ୟ ତମ ଭାରତବର୍ଷ !"

ନାରେଣୀ ସେପର୍ଯ୍ୟନ୍ତ ଚିତ୍ ହୋଇ ନିଶ୍ଚିନ୍ତରେ ମୁକ୍ତ ଆକାଶକୁ ଚାହିଁ ପହଁରୁଥିଲା । ହଠାତ୍ ଚିତଳ ମାଛ ଲେଉଟିଲା ଭଳି ଲେଉଟି ପଡ଼ିଲା ସେ । ସେଇଠୁ ଠିଆ ପହଁରାରେ ସ୍ଥିରହୋଇ ମୁଣ୍ଡ ଟେକି ଚାହିଁଲା ସେ ଘାଟଆଡ଼କୁ ।

ଯୁବକସଂଘର ନେତା ମାଧିଆ ଓ ଗାଁର ପୁରୁଖାଲୋକଙ୍କ ଭିତରେ ଚାଲିଥିବା ଯୁକ୍ତିତର୍କର କେଇପଦ ଯୁକ୍ତି ପଡ଼ିଗଲା ଏଥର ସ୍ପଷ୍ଟ ତା କାନରେ । ଚକିତ ହୋଇଗଲା ତା ଗୋଟା ଭିତରଟା ସେଇକ୍ଷଣି । ତତ୍‌କ୍ଷଣାତ୍ କ୍ରୋଧ ଚଢ଼ିଗଲା ତା ମୁଣ୍ଡକୁ । ଦୁଇହାତ ଉପରକୁ ଟେକି ଠୋ ଠୋ ତାଳି ମାରିଲା ସେ । ତା ତାଳି ଶୁଣି କୂଳର ସମସ୍ତଙ୍କ ଦୃଷ୍ଟି ତା ଆଡ଼କୁ ହୋଇଯିବାମାତ୍ରେ ଶୁଣାଗଲା ତା ସ୍ୱର—

"ଶୁଣିଲଣି ସବୁ ! ତମେ ଆଗରୁ ବିଶ୍ୱାସ କରିବ ନାହିଁ ଯେ ମୁଁ ନାରେଣୀ କରୁଛି ଏସବୁ—ଥରକୁ ଥର ବୁଡ଼ୁଛି, ମାଟି ଆଣୁଛି । ଥରକୁ ଥର ଶୁଣୁଛି ସେଇ କଥା—ତମ ପ୍ରାର୍ଥନା, ତମ ବିଶ୍ୱାସ ବଞ୍ଚାଉଛି ମତେ ! ମୋର କିଛି କାଢ଼ ନାହିଁ ଏଥିରେ । ଆଚ୍ଛା—" ଏକ ବଡ଼ ଦମ୍ ନେବାପାଇଁ ଅଳ୍ପ ଅଟକିଯାଇ ପୁଣି ଥରେ ତୃତୀୟବାର ପାଇଁ ନାରେଣୀ ଘୋଷଣା କଲା ସେଇ ପାଣି ଭିତରୁ—

"ଆଚ୍ଛା, ଏଥର ତମେ ସମସ୍ତେ କୁହ—ଆରେ ନାରେଣୀ ମରିଯା, ମରିଯା, ତତେ ବଢ଼ିଲା ଖାଇଯାଉ । ତୁ ଆମ ଭାରତବର୍ଷର ଧର୍ମହାନି କଲୁ—ମରିଯାରେ ନାରେଣୀ—କୁହ ସମସ୍ତେ ଏଇ କଥା । ତମକୁ ଅନୁରୋଧ ଦ୍ୱାହି, କୁହ ଏଇ କଥା ସମସ୍ତେ । ଦେଖିବା—ତମ ପ୍ରାର୍ଥନା ବଳରେ ଯଦି ବଞ୍ଚିଲି ମୁଁ ଏଥର ତମ ଅଭିଶାପରେ ମରୁଚି କି ନାହିଁ.. "

କହୁ କହୁ ନାରେଣୀ ପୁଣି ଥରେ ସିଙ୍ଗିବୁଡ଼ା ମାରି ଯାଇ ଉଠିଲା ସିଧା ଗଣ୍ଡ ମଝିରେ ।

ଲୋକେ ତଟସ୍ଥ । କିଏ ଜଣେ କହିଲା—"ଏତେ ଦମ୍ଭ ! ଧର୍ମ ସହୁଚି ଏକଥା ! ଯାଚି ମାଗୁଚି ଲୋକଙ୍କ ଅଭିଶାପ ! ହାୟରେ କପାଳ !"

କିନ୍ତୁ ସେତେବେଳକୁ ନାରେଣା ବୁଡ଼ିଯାଇ ସାରିଲାଣି ପାଣି ତଳେ । ନାରେଣାର ସାଙ୍ଗ ମାଧିଆ ପ୍ରଥମେ ଆରମ୍ଭ କରିଦେଲା ପହିଲି—"ଯା ମର୍, ତତେ ବଉଳା ଖାଉ ! ଯା ମର୍, ତୋ ବେକରେ ବାରହାତ ଖଣ୍ଡା ପଡୁ !"

ପ୍ରଥମେ ପ୍ରଥମେ ମାଧିଆର ପହିଲି କେହି ଗ୍ରହଣ କରୁନଥିଲେ । କିନ୍ତୁ ସେ ଧମକେଇ ଦେଲା, "ଦେଖ ! ଧର୍ମ ଦ୍ରୋହି । ଟୋକାଟା ଜମିରପେଇଁ ମରିବାକୁ ବାହାରିଚି । ତା ଶେଷ ଇଚ୍ଛା ପୂରଣ ହେଉ । ସେ ଗଲା ପୂର୍ବରୁ କହିଲା ପରି ତମେକୁ—ସମସ୍ତେ ତାର ମରଣ କାମନା କର । କହିଲା ନାହିଁ ? କିଏ ଜାଣେ ସ୍ୱାଦ୍ୱାରି ତାର ଉପକାର ନହେବ ? ତା ଆତ୍ମା ଶାନ୍ତିରେ ନ ରହିବ ?"

ଲୋକେ ଏଥର ମାଧିଆର ଯୁକ୍ତି ବୁଝିପାରିଲେ । ସମସ୍ତେ ତେଣୁ ଏକମେଳ ହୋଇ ପହିଲିରେ ଯୋଗଦେଲେ—"ଯା ମର୍, ତତେ ବଉଳା ଖାଉ···"

କିନ୍ତୁ ସେତେବେଳକୁ ରତ୍ନପୋଖରୀର ଗଭୀର ଗର୍ଭର ପାଣିତଳେ ଘଟଣାମାନ ଘଟି ଯାଉଥିଲା ଅନ୍ୟପ୍ରକାରେ । ଗର୍ଭତଳ ପଙ୍କରୁ ମୁଠାଏ ହାତ ମୁଠାରେ ଧରିନେଇ ନାରେଣା ଭୁସ୍‌କିନା ପାଣି ତଳୁ ଉପରଆଡ଼କୁ କୁଦାଟାଏ ମାରିବାର ଅବ୍ୟବହିତ ପୂର୍ବରୁ ତା ମନ ଭିତରର ଅବସାଦ ହଠାତ୍ ମୂର୍ତ୍ତିମନ୍ତ ହୋଇ ଠିଆହୋଇ ପଡ଼ିଲା ତା ସାମ୍ନାରେ । ସେଇ ମୂର୍ତ୍ତିକୁ ପାଣିତଳେ ଦେଖିପକାଇବା ମାତ୍ରେ ନାରେଣାର ପୌରୁଷ, ତାର ଅହମିକା ଅନେକ ଭାଙ୍ଗି ପଡ଼ିଲା, ଆଉ ମନେ ମନେ ସେ କହିଲା—

"ନା, ଏଥର ବି ପୃଥିବୀରେ ସେଇଆ ଶୁଣିବାକୁ ପଡ଼ିବ—ଯେ ସମସ୍ତେ ସିନା ଉପର ମନରେ ତାକୁ ମର ମର କହୁଥିଲେ କିନ୍ତୁ ଭିତର ମନରେ ଗଜ ଉଦ୍ଧାରଣ ଜଣାଣ ବୋଲୁଥିଲେ ।"

ଏଇ ଚିନ୍ତାଟା ତା ମନକୁ ଛୁଇଁ ଛୁଇଁ ତାକୁ ଲାଗିଲା—ଗତ ଦୁଇଥର ଯାକ ମାଳମା ପ୍ରସିଦ୍ଧ ରତ୍ନପୋଖରୀର ପାତାଳଫୁଟି ପାଣିତଳୁ ମାଟି ଆଣିବା ବାହାନାରେ ସେ କେବଳ ନିଜେ ନିଜ ପାଖରେ ଏଇ ପ୍ରମାଣହିଁ ଦେଇସାରିଥିଲା ଯେ, ପ୍ରତିଥର ପାଣିରେ ବୁଡ଼ିଲା-ବେଳେ ସେ ନିଜକୁ ନିଜେ ଭାବିନେଉଥିଲା ଏକ ପ୍ରକାଣ୍ଡ ହାତୀଟିଏ ପାଲଟି ଯାଇଛି ସେ, ଆଉ ସେ ହାତୀକୁ ଧରିନେଉଚି ବଉଳା କୁମ୍ଭୀର । କିନ୍ତୁ ପ୍ରତିଥର ବଉଳା ତାର ହାତୀ ଗୋଡ଼କୁ ଧରିନେଲାମାତ୍ରେ ତା'ମୁହଁରୁ ବାହାରି ପଡ଼ୁଥିଲା ଗଜଉଦ୍ଧାରଣ ଜଣାଣ ।

ଆଶ୍ଚର୍ଯ୍ୟ ହୋଇଗଲା ନାରେଣା । ଗଭୀର ପାଣି ତଳେ, ସବୁ ଲୋକଙ୍କ ଦୃଷ୍ଟି ଉହାଡ଼ରେ ଥାଇ ତେବେ ସେ ଏଇ ଚିନ୍ତା ଖେଳୁଚି ପ୍ରତିଥର ! ନିଜକୁ ବିପଦରେ

ପଡ଼ିଯାଇଥିବା ହାତଟିଏ ଖାଲି ପ୍ରତିଥର ତେବେ ସେ ଭଗବାନ୍ କୃପା ଭିକ୍ଷା କରୁଛି ଆଉ କହୁଛି ଯେ—ହେ ଭଗବାନ, ତମେ ଅମୁକ ଯୁଗରେ କୁମ୍ଭୀର ମୁହଁରେ ପଡ଼ିଯାଇଥିବା ହାତୀକୁ ରକ୍ଷା କରିବା ପେଇଁ ଯେମିତି ଚକ୍ର ପେଶିଥିଲ, ଅମୁକ ଯୁଗରେ ଦ୍ରୌପଦୀକୁ ଭରି ରାଜସଭାରେ ଉଲଗ୍ନ କରାଗଲାବେଳେ ତମେ ଯେମିତି ଅସୀମ ବସ୍ତ୍ରରେ ଆଚ୍ଛାଦନ କରିଥିଲ... ଧେତ୍ ! ନା ! ଧେତ୍ !

ନାରେଣା ପାଣିତଳେ ପଙ୍କ ମୁଠାଟାକୁ ଜୋର୍‌କରି ଛାଡ଼ିଦେଲା ହାତ ମୁଠାରୁ ଆଉ ମନେ ମନେ ଚିତ୍କାର କରିବାକୁ ଲାଗିଲା—ନା, ଏଥର ସେମାନେ ପଙ୍କ ଦେଖିବାକୁ ଅନାଇ ବସି ନାହାନ୍ତି । ସେମାନେ ସ୍ୱଚକ୍ଷୁରେ ଦେଖିବାକୁ ଚାହୁଁଛନ୍ତି ବାରହାତ ଖଣ୍ଡା । କାହିଁ କୁଆଡ଼େ ଗଲା ସେ ଖଣ୍ଡାଟା !

ନାରେଣା ଧୂସ୍‌ଧୂସ୍ କରି ଆଡ଼େଇ ଚାଲିଲା ପଙ୍କ । ସେ ଦରାଣ୍ଡି ପକେଇଲା ବାରହାତ ଖଣ୍ଡାଟାକୁ ।

ସେତେବେଳକୁ ରତ୍ନଯୋଡ଼ର ଉଭୟ କୂଳରୁ ପ୍ରତିଧ୍ୱନିତ ହେଉଥାଏ ସେଇ ସମ୍ମିଳିତ ମୃତ୍ୟୁବାଣୀ—"ଯା ମର୍...ଯା ମର୍..."

ହଠାତ୍ ଗଣ୍ଡ ମଝିରେ କଳାଚୁମର ପାଣିର ରଙ୍ଗ ଗୋଳିଆ ଦେଖିପାରି କେହି ଜଣେ ବଡ଼ ପାଟି କରି ଚେତେଇଦେଲା—

"ଦେଖିଲ ଦେଖିଲ, ଗୋଳି ଉଠୁଛି ନା କଅଣ ପାଣି ତଳୁ !"

ଠିକ୍ ସେତିକବେଳେ ନାରେଣାର ଅଧା ମୁଣ୍ଡ ଦେଖାଗଲା ପାଣିତଳୁ । ମୁହଁ ଉପରକୁ କରି ଦମେ ଜୋର୍ ନିଃଶ୍ୱାସ ନେଲାଭଳି ସେ ଆଁ କରି କାମୁଡ଼ି ପକାଉଥାଏ ପବନକୁ । ତେବେ ଏଥର କୌଣସି କାରଣରୁ ପୂର୍ବଥର ପରି ଉପରକୁ ହାତ ଟେକି ଲୋକଙ୍କୁ ଯୋଡ଼ତଳ ପଙ୍କ ଦେଖାଇବା ମତଲବ୍‌ରେ ଥିଲା ଭଳି ଦିଶୁ ନଥାଏ ସେ । ବରଂ, କଅଣ ଗୋଟାଏ ଭାରି ଓଜନିଆ ଜିନିଷ ପାଣିତଳୁ ଟେକି ଉପରେ ଲୋକଙ୍କୁ ଦେଖାଇବା ଲକ୍ଷ୍ୟରେ ସେ ଥାଏ । ସେ ହାତର ଜିନିଷ ପାଥିରେ କୁସ୍ତି କଲାଭଳି ଦିଶୁଥାଏ ସମସ୍ତଙ୍କ ଆଖିକୁ ।

"ଆରେ କି ଜିନିଷ ସେ—ଜିନିଷ ?" ଲୋକେ ହଠାତ୍ ମର୍ ମର୍ ପହିଲି ଛାଡ଼ି ଡାକ ପକେଇଲେ, "ଦେଖା ଦେଖା ସେ କି ଜିନିଷ !"

କିନ୍ତୁ ନାରେଣା ତା ହାତ କି ଗୋଡ଼ କୋଉ ହେଲେ ଅଙ୍ଗ ଉପରକୁ ଟେକି ପାରୁ ନଥାଏ । ସେ ଖାଲି କୁସ୍ତି କରୁଥାଏ ଆଉ ପବନକୁ ପୁଳା ପୁଳା କାମୁଡ଼ି ପକାଉଥାଏ ।

ଲୋକେ ଅଳ୍ପ ସମୟ ଅପେକ୍ଷା କଲେ ନାରେଣାର କୃତିତ୍ୱଟି ସ୍ୱଚକ୍ଷୁରେ ଦେଖିନେବାକୁ ।

କିନ୍ତୁ ନାରେଣାର କୃତ୍ତି ଓ ପବନ କାମୁଡ଼ା ଦେଖି ସେମାନେ ଅବଶେଷରେ ବୁଝିନେଲେ ବ୍ୟାପାରଟାକୁ—"ଆରେ ଭୂତ !" ଜନୈକ ସବଙ୍କ କୂଳର ଜନସମାଗମ ଭିତରୁ ନାରେଣା ଉଦ୍ଦେଶ୍ୟରେ ଚିତ୍କାର କରି ଉଠିଲେ, "ଜାଣି ପାରୁନୁ କିଏ ଧରିଚି ତତେ ! ରେ ମୂର୍ଖ ! ବୋଲ୍ ବୋଲ୍···ଗଜ ଉଦ୍ଧାରଣ ଜଣାଣ ମନେ ଅଛି କି ? ବୋଲ୍ ବୋଲ୍···"

ନାରେଣା ତଥାପି କୃତ୍ତି କରୁଥାଏ । ପବନକୁ ପୁଳାପୁଳା କାମୁଡ଼ି ସୁ ସୁ ନିଶ୍ୱାସ ଛାଡ଼ି କୃତ୍ତି କରିଚାଲିଥାଏ ।

କୂଳର ସମସ୍ତେ ଆହୁରି ଥରେ ପାଟିକରି ଚେତେଇଦେଲେ, "ଆରେ ! ତତେ ବଉଳା କୁମ୍ଭୀର ଧରିନେଇଚିରେ ମୂର୍ଖ···"

ହଠାତ୍ ନାରେଣାର ପୂରା ମୁଣ୍ଡଟା ଫୁଟ୍‌ବଲଟାଏ ପରି ଭାସି ଉଠିଲା ପାଣି ଉପରକୁ । ତତ୍‌କ୍ଷଣାତ୍ ତାର ଜବାବ ଶୁଣାଗଲା—"କୁମ୍ଭୀର ଫିମ୍ଭୀର କିଛି ନୁହେଁ । ମନେହେଉଚି ଭଗବାନ ନିଜେ···ଭଗବାନ ନିଜେ ଧରି ପକାଇଲେ । କିହ, କିହ ଏଥର କୋଉ ଜଣାଣ ବୋଲିବି ? କିହ···କୋଉ ଜଣାଣ···? ମୁହୂର୍ତ୍ତିକ ପାଇଁ···ଛାଡ଼ୁ ନାହିଁ ସେ···ଛାଡ଼ିବ ନାହିଁ·· ମତେ···ତମକୁ···ସମସ୍ତଙ୍କୁ···"

ଠିକ୍ ସେଇଠି ହଠାତ୍ ଫୁଟ୍‌ବଲ୍ ଭଳି ଭାସୁଥିବା ମୁଣ୍ଡଟା ପଥର ମୁଣ୍ଡାଏ ଭିଳି ଟୁବ୍ କିନା ବୁଡ଼ିଗଲା ପାଣି ତଳକୁ ।

ଗଡ଼ୁଯୋଡ଼ର ଦୁଇକୂଳରେ ହାହାକାର—"ଆରେ ଭକ୍ତଟାଏରେ ! ବୁଡ଼ିଗଲା ! ବୁଡ଼ିଗଲା ! ହାୟ ହାୟ···ଭକ୍ତ ଲୋକଟିଏରେ ମରିଗଲା !" ପହଲ ପଡ଼ୁଥାଏ ଗଡ଼ୁବଟ ମୂଳେ ।

---

# ସେଉଁଠି ମୀନ ଖେଳୁଛି

"ଏ ଯୋଉ ମହାତ୍ମା ସେଠି ସେ ଝୂବ ଗାଡ଼ିଆକୁ ଅନେଇ ବସିଛନ୍ତି ତାଙ୍କୁ କେତେ ଉମର ହେବଣି କହିଲ ?"

ବାଟୋଇ ଜଣେ ସାଇକେଲରେ ସେଇ ବାଟେ ଯାଉ ଯାଉ ଅନ୍ୟ ଜଣେ ସାଥୀ ବାଟୋଇକୁ ପଚାରିବାରେ ସେ ଜଣକ ସାଇକେଲର ଗତିକୁ ଧୀମେଇଦେଲେ ଓ ଝୂବଗାଡ଼ିଆ ବନ୍ଧରେ ଉଠିଥିବା ଗୋଟାଏ ବରଗଛ ତଳର ଛୁଇଁଛୁଇଁଆ ଥିବା ଜାଗାରେ ବସି ମଣିଷଟାକୁ ଅନେଇ ଅନେଇ କହିଲା, "ଷାଠିଏ—ଖୁବ୍ ବେଶି ସତୁରି । ତଦୁର୍ଦ୍ଧ୍ୱ ନୁହେଁ ।"

"ଯାଃ—ତମେ ମଣିଷ ଚହ୍ନି ନାହଁ ସାହା ଲାଗୁଚି । ଲୋକଟାର ବୟସ ଶହେରୁ ଊଣା ହେବ ବୋଲି ମନେକରୁଚ ? ମୋ ବାପା ମଲେଣି ଗଲାସନଠୁଁ । ସେ କହନ୍ତି, ଏ ଗାଁର ଏ ମହତ୍ମା—ଯାଙ୍କ ନାଁ ଚନ୍ଦ୍ରାମଣି—ଝୂବଗାଡ଼ିଆ ହୁଡ଼ା ଉପରେ ବସିବାର ତାଙ୍କୁ ଦେଖାଗଲାଣି କମ୍‌ସେ କମ୍ ବାପାଙ୍କ ବାହାଘର ବୋଇଲେ ମୋର ଜନ୍ମର ପାଞ୍ଚ ସାଲ ପୂର୍ବରୁ । ଏଇ-ଖଣିକା ମୋ ବୟସ ଆସି ହେଲା ପଚାଶରୁ ବେଶି । ତା' ମାନେ ଏ ମହାତ୍ମା ଏଠି ବସିଲେଣି କେତେ ବର୍ଷ କହୁନ..."

ବାଟୋଇ ଦି'ଜଣ ଏହା ପରେ ସେ ମହାତ୍ମାଙ୍କ ଉଦ୍ଦେଶ୍ୟରେ ପ୍ରଣାମ ଗୋଟିଏ ଗୋଟିଏ ଜଣେଇ ନିଜନିଜର ସାଇକେଲର ଗତି ବଢ଼ାଇଦେଲେ ଓ ଘଟଣାସ୍ଥଳରୁ ଅତଶୀଘ୍ର ଉଭେଇ-ଗଲା ପରି ଉଭେଇ ଗଲେ ।

ଏହା ପରେ ଘଟଣାସ୍ଥଳରେ ପ୍ରବେଶ କଲେ ଯୋଡ଼ିଏ ଚଉଦ-ପନ୍ଦର ବର୍ଷର ଟୋକା । ଉଭୟଙ୍କର କାନ୍ଧରେ ଯୋଡ଼ିଏ ବସ୍ତାନି ଝୁଲୁଥାଏ । ସେଥିରେ ପଢ଼ାବହି । ପାଖ ଗାଁରେ ନବପ୍ରତିଷ୍ଠିତ ହାଇସ୍କୁଲର ଛାତ୍ର ସେମାନେ । ସେମାନଙ୍କର କଥାବାର୍ତ୍ତା ପୂର୍ବର ବୟସ୍କ ବାଟୋଇ ଦୁଇଜଣଙ୍କ ପରି ନୁହେଁ । ଜଣେ ଅନ୍ୟ ଜଣକୁ କହୁଥାଏ—

"ଜାଣିଚୁ...ଜନଗଣନାବାଲା ଆସିଚନ୍ତି । ଲୋକଙ୍କ ମୁଣ୍ଡ ଗଣତି ହଉଚି । ସେମାନେ କହୁଚନ୍ତି ଆମର ଏ ଅଞ୍ଚଳରେ ମଣିଷ ବହୁତ ବଢ଼ିଗଲେଣି । କେହି ମରୁନାହାନ୍ତି । ଖାଲି ଗୋଟାକ ପରେ ଗୋଟାଏ ଜନ୍ମ ହେଉଚନ୍ତି । ଏହାର ଫଳ କ'ଣ ହେବ କହିଲୁ ?"

ଅନ୍ୟ ଜଣକ ଗୋଟାଏ ପିଜୂଳି ଖ୍ରେବାଉଥାଏ । ସ୍କୁଲ୍ ଫେରନ୍ତା ବାଟରେ ଜଣକ ବଗିଚ୍ଚରେ ପିଜୂଳି ହୋଇଚି ଦେଖି ଦୁହେଁ ପଶିଥିଲେ ଭେଡ଼ାରେ କଣା କରି । ପିଜୂଳି ତୋଳିଲାବେଳେ ବଗିଚ୍ଚର ମାଲିକ ହାବୁଡ଼ରେ ପଡ଼ିଗଲେ ଦୁ'ଜଣଯାକ । ଲୋକଟା ପିଲାଯୋଡ଼ାକୁ ଏଭଳି ଖ୍ରେଳ କରୁଥିବାର ଦେଖି ରାଗିଯାଇ କହିଲା, "ହଇରେ, ପାଠ ପଢ଼ୁଚ ନା ଚୋରି ପଢ଼ୁଚ ? କାନ୍ଧରେ ବହି ବୋହୁଚ, ଏଣେ ଖ୍ରେଳ କରୁଚ । କଅଣ ଆଜିକାଲି ଏଇ ପଢ଼ା ହଉଚି ତମ ଇସ୍କୁଲରେ ?"

ପିଲା ଦୁଇଟା ଖ୍ରେଳ କରୁଥିବା ଅବସ୍ଥାରେ ଧରାପଡ଼ିଯିବା ଯୋଗୁ ମିଟିମିଟି ହୋଇଗଲେ ଟିକିଏ । କିନ୍ତୁ ମୁହଁରେ ଇସ୍ପାତ ପାଢଥାରେ ଢାଆଣ ଜଭ ଦୁଇଟାକୁ ପିଲାମାନେ ଦମନ କରିପାରନ୍ତେ ବା କେତେକେ ? ତେଣୁ ବଗିଚ୍ଚ ମାଲିକର ଆହ୍ୱାନକୁ ସମ୍ଭାଳି ନପାରି ଉତ୍ତର ଦେଲା ତାଙ୍କ ଭିତରୁ ଜଣେ—ଖ୍ରେଳ ? କିଏ କରୁଚି ଖ୍ରେଳ ? କାହାର ? ଏ ବଗିଚ୍ଚ ତମର ନା ତମ ବୋପାର ? ଏ ସମ୍ପତ୍ତି କାହାର ? ଆମ ବହିରେ ଅଛି, ଏସବୁ ଜମିବାଡ଼ି କାହାରି ନୁହଁ—ସରକାରଙ୍କର । ସରକାରୀ ସମ୍ପତ୍ତି ତମେ ଖ୍ରେଳ କରି ବାଡ଼ ବୁଜି ରଖିଚ । ଆମେ ଆମ ସରକାରଙ୍କ ଗଛର ପିଜୂଳି ଖାଇଲୁ—ତମ ବୋପାର କଅଣ ଗଲା ?"

ବଗିଚ୍ଚ ମାଲିକ ଜଣେ ମଧ୍ୟବୟସ୍କ ଗୃହୀଲୋକ । ଇଚ୍ଛାକରିଥିଲେ ଚଗଲା ହୁରୁମା ଟୋକା ଯୋଡ଼ାଙ୍କ ଗାଲରେ ଦୁ ଦୁ ଚଟକଣା ଦେଇ ଧକ୍କା ମାରି ବିଦା କରି ଦେଇଥାନ୍ତା ହେଉ ବାହାରକୁ । କିନ୍ତୁ କୌଣସି କାରଣରୁ ଆହାବ ଗଲା ସେ । ବିଶେଷତଃ ଇସ୍କୁଲିଆ ପିଲାଙ୍କୁ ଡର । ଏହାଛଡ଼ା ଆହୁରି ମଧ୍ୟ ଡର ଆଉ ଏକ କଥାକୁ । ପିଲା ଦୁଇଟା ଦିଶୁଥିଲେ ଅନ୍ୟ ଜାତିର । ଆଜିକାଲି ଗୋଟିଏ ଜାତିର ଲୋକ ଅନ୍ୟ ଜାତିର ପିଲାଙ୍କୁ ମାଡ଼ଧର କଲେ ଫଳ ହବ କ'ଣ, ମଧ୍ୟବୟସ୍କ ଲୋକଟିକୁ ଯେତିକି ଜଣା ତାଠୁଁ ବେଶି ଜଣା ସ୍ଥାନପିଲାଙ୍କୁ । ତେଣୁ ଜ୍ୟେଷ୍ଠମାନେ କନିଷ୍ଠଙ୍କୁ ପୂର୍ବକାଳ ପରି ଆକଟ କରିବା, କାନ ମୋଡ଼ିଦେବା ଆଜିକାଲି ଅସମ୍ଭବ ।

ପିଲା ଦୁଇଟା ଏହିପରି ଜଣେ ବୟସ୍କ ବଗିଚ୍ଚ ମାଲିକକୁ ନିଜର ବୁଦ୍ଧିବଳରେ ଖ୍ରେଳ କରିଦେଇ ଭଦ୍ରଲୋକଙ୍କ ପରି ପେଣ୍ଟ୍ ପକେଟରେ ପିଜୂଳି ଭର୍ତ୍ତି କରି ଫେରିବା ପରେ ଟିକିଏ ବେଶୀ ଉଛନ୍ନ ହେଲାପରି ନଜର କରୁଥାନ୍ତି ସବୁଆଡ଼କୁ । ଏତିକିବେଳେ ତାଙ୍କର ନଜର ପଡ଼ିଗଲା ପୋଖରୀ ହୁଡ଼ାରେ ହୁଙ୍କାଭଳି ବସିଥିବା ମଣିଷଟା ଉପରେ ।

"ହଇଓ ଶଳା ବୁଢ଼ା, ପୋଖରୀ ଭିତରେ କଅଣ ଦେଖୁଚ—ବାଘ ?" କହୁ କହୁ ପିଜୂଳି ଖ୍ରେବାଉଥିବା ଟୋକାଟା ହସିପକାଇଲା, ଆଉ ପୋଖରୀ ଭିତରେ ବାଘ କଥାଟି ନିଜେ ଉଦ୍ଭାବନ କରିଥିବା କାରଣରୁ ତାର କଳ୍ପନାପ୍ରବଣତା ହଠାତ୍ ଉତ୍‌ଫୁଲ୍ଲିତ ହୋଇଉଠିଲା । ଟୋକାଟା ଏଥର ଆହୁରି ବଡ଼ ପାଟିରେ ହସିହସିକା ରାସ୍ତା ଗୁଡ଼ ଗାଡ଼ିଆ ହୁଡ଼ା ଉପରକୁ

ଉଠିବାର ଉପକ୍ରମ କଲା । ତା ଦେଖାଦେଖି ଅନ୍ୟ ଟୋକାଟି ବି ଧଇଲା ତା ପିଛୁ । ଦୁହେଁ ସେହିପରି ହସୁ ହସୁ ବେଦମ୍ ହବା ଅବସ୍ଥାରେ ଆସି ପହଞ୍ଚିଗଲେ ଚନ୍ଦ୍ରାବୁଢ଼ା ପାଖାପାଖି ।

"ହଇରେ ହେ, କାହିଁକି ଏମିତ ଉତ୍ପାତଆ ହଉଚ !" ବୁଢ଼ା ଲୋକଟି ତାର ନାତ ବା ଅଣନାତ ପଣନାତ ବୟସର ପିଲାଯୋଡ଼ିଙ୍କୁ ଯେଉଁ ଭାଷାରେ ଆକଟ କରିବା କଥା ସେହିପରି କହୁ କହୁ ପିଲାଙ୍କ କାନ୍ଧରେ ଝୁଲୁଥିବା ବସ୍ତାନି ଯୋଡ଼ିକୁ ଅନେଇ ପଚାରିଲା— "ଏଥିରେ କି ପାଠ ଅଛୁଇରେ ତମର ? କଅଣ ଟିକିଏ ଆଧୁନିକ ବିଦ୍ୟା ଶିଖେଇ ଦଅନ୍ତ ନାହିଁରେ ମତେ…ହଇରେ ?"

କିନ୍ତୁ ଟୋକା ଦୁଇଟାଙ୍କ ମତଲବ ଦିଶୁଥାଏ ଭିନ୍ନ ପ୍ରକାର । ଯଦିଓ ମୁହଁ ଯୋଡ଼ାକରୁ କିରିକିରି ହସ ଫାଟିପଡ଼ୁଥାଏ, ତେବେ କୌଣସି କାରଣରୁ ସେ ଯୋଡ଼ାଙ୍କ ଆଖି ହଳକ ଦିଶୁଥାଏ ବଡ଼ ଅବାଗିଆ—ଗାଁର ଶତାୟୁରୂପେ ସଦ୍ୟ ଜନଗଣନା ବିଭାଗର ଲୋକଙ୍କଦ୍ୱାରା ମୁଣ୍ଡ ଗଣତିରେ ଚିହ୍ନିତ ହୋଇ ସାରିଥିବା ବୁଢ଼ା ଚନ୍ଦ୍ରା ମଲ୍ଲିକଙ୍କର ସ୍ତିମିତ ଅଥଚ କାର୍ଯ୍ୟକ୍ଷମ ଦୃଷ୍ଟିକୁ । •

"କିରେ, ତମ ଯୋଡ଼ାଙ୍କ ଆଖିରେ ବାଘମାମୁଁ ବସେ କିମିପରି ଦିଶୁଚନ୍ତି କାହିଁକିରେ ବାପ ? କାହାରି ଅନିଷ୍ଟ କରି କୁଆଡ଼ୁ ପଳେଇ ଆଇଚ କିରେ କୁଲାଙ୍ଗାର ହଳକ ?"

ଟୋକା ହଳକ ନିଜ ପ୍ରଶ୍ନର ଉତ୍ତର ଗାଁର କୁଳବୃଦ୍ଧ ବୋଲିଉଥିବା ଚନ୍ଦ୍ରାମଲ୍ଲିକ ବୁଢ଼ା ତୁଣ୍ଡରୁ ଅବିକଳ ନିଜ କଳ୍ପନାର ପାଖାପାଖି ଧରିଯାଉଥିବା ଦେଖି ଆହୁରି ହସାହସି ହେଲେ ପରସ୍ପରକୁ ଅନାଅନି ହୋଇ । କିନ୍ତୁ ଅଳ୍ପ ସମୟ ପରେ ପ୍ରକୃତିସ୍ଥ ହୋଇ ଟୋକା ହଳଟି ବହି ବସ୍ତାନିକୁ କାନ୍ଧରୁ ଓହ୍ଲେଇ ରଖିଲେ ଗାଡ଼ିଆ ବନ୍ଧ ଉପରେ । ଏହା ପରେ ସେମାନେ ପ୍ରସ୍ତୁତ ହେଇଗଲେ ଅବେଳାରେ ହେଲେ ମଧ୍ଯ ଗାଡ଼ିଆରେ ପଶି, ଦେହରୁ ଗରମ ଭାଙ୍ଗିବା ଇଚ୍ଛାରେ, ଥୋଡ଼ାଏବେଳ ଜଳକେଳି କରିବା ପାଇଁ ।

ପ୍ରାୟ ଘଣ୍ଟାଏ କାଳ ବୁଡ଼ ଗାଡ଼ିଆର ଅଳ୍ପ ଗଭୀର ପାଣିକୁ ଗୋଳେଇ ଘାଣ୍ଟି ହାଣ୍ଡି ହଲେ ପରି ମଞ୍ଜାମଞ୍ଜି କରିସାରି ଟୋକା ହଳକ ଉଠିଲେ ପାଣିରୁ । ସେତେବେଳକୁ ଆଖି ତାଙ୍କର ଦିଶୁଥାଏ କୁମ୍ଭାଟୁଆ ଭଳି ଲାଲ୍ ଲାଲ୍ ।

ପିଲାଏ ଗାଡ଼ିଆ ବନ୍ଧରେ ବହି, ବସ୍ତାନି ଥୋଇ ଗାଧୋଇଯିବାବେଳୁ ବୁଢ଼ା ଚନ୍ଦ୍ରା ମଲ୍ଲିକ ସେମାନଙ୍କ ବସ୍ତାନି ଫିଟେଇ କେତେଖଣ୍ଡ ପଢ଼ା ବହି କାଢ଼ି ଜମେଇ ସାରିଥାଏ ତା ସ୍ୱରପଟେ । ପିଲେ ପାଣିରୁ ଉଠିଲାବେଳକୁ ବୁଢ଼ା ବସିଥାଏ ଗୁମ୍ ହେଇ । ସ୍ୱରପଟେ ଖୋଲାଆ ହେଇଥିବା ବହିଗୁଡ଼ାକ ଦେଗକୁ ଆଦୌ ଲକ୍ଷ୍ୟ ନଥାଏ ତାର ।

ଟୋକାମାନେ ଓଦା ସଡ଼ ସଡ଼ ହେଇ ଗଡ଼ିଆ ବନ୍ଧକୁ ଉଠି ନିଜ ନିଜ ବସ୍ତ୍ରର ଏ ହାଲ ଦେଖି ଆଶ୍ଚର୍ଯ୍ୟ ହେଲେ । ଚିଡ଼ିଗଲେ ବି ଟିକେ ।

"ତମକୁ କିଏ କହିଲା ଆମ ବସ୍ତ୍ରାଣି ଫିଙ୍ଗିଦେବାକୁ ?" ଜଣେ ପାଟିକରି ଉଠିଲା । ତେବେ ଅନ୍ୟ ଜଣକ ହସହସ ହେଇ ପଚାରିଲେ—"ହଇଓ ଅଜା ! ତମକୁ ପାଠ ପଢ଼ି ଆସେ ନା କଅଣ ମ ! କେଉଁଠି କହିଲ କଅଣ ପଢ଼ିଲ ଆମ ବସ୍ତ୍ରରୁ ?"

ଗାଁର କୁଳବୃଦ୍ଧ ଶରଣ୍ଣୀ ବ୍ୟକ୍ତିଟି ବୟସରେ ଯଥେଷ୍ଟ ବୃଦ୍ଧ ହୋଇଯାଇଥିଲେ ମଧ୍ୟ ମନରେ ତାର ଯେତେବେଳେ କେଉଁ ଉମରର ମଣିଷଟି ସକ୍ରିୟ ଅବସ୍ଥାରେ ଥିଲା କେଜାଣି—କିଶୋର ଦୁହିଁଙ୍କ ସଙ୍ଗତ ପାଇ ମନ ଭିତରର ନବାକ୍ ମଣିଷଟି ତାର ସବାକ୍ ହୋଇଉଠିଲା । କହିଲା—"ତମ ବସ୍ତ୍ରରେ କୃଷ୍ଣଙ୍କ ନଟୁଲେଖା ପ୍ରସଙ୍ଗ ଥିଲାଭଳି ଦିଶୁନାହିଁ ତ ରେ ବାପ ! ସେକାଳେ ଲୋକଗୁଡ଼ାକ ଖାଲି ଲେଖା ଥିଲେ । ଆମ ଠାକୁରତ ନିଜେ ଲେଖିଥିଲେ—ନହୁଣୀ ଲେଖା, ବସ୍ତ୍ର ଲେଖା, ନଟୁଲେଖା, କେତେ ଲେଖା । ଆଜିକାଲି ଲେଖା ବିଦ୍ୟା କିଛି ନାହିଁ ତମର ? ମୁଁ ତ ଖାଲି ସତ ସତ ବୁଝେଇକି ହଉଚ !"

ଟୋକା ଦୁଇଟା ବୁଢ଼ା ମୁହଁରୁ ଏଭଳି ପ୍ରସଙ୍ଗ ଶୁଣି ଭାରି ଖୁସି ହେଇଗଲେ । ଆହୁରି ହସିଲେ ଜୋର ଜୋର ହେଇ । ପଚାରିଲେ—"ଅଜା, ତମ ଉମର ସତେରେ ଶହେ ? ଏ ଜନଗଣନାବାଲା କହୁଥିଲେ କୁଆଡ଼େ ଆମ ଏ ଖଣ୍ଡମଣ୍ଡଳରେ ଆଉ କେହି ନାହିଁ ତମ ଉମରର—ସତ ନା ?"

ବୁଢ଼ା ଯୋଉ କଥାଲହରରେ ଶ୍ରୀକୃଷ୍ଣଙ୍କ ଲହୁଣୀ ଲେଖା, ବସ୍ତ୍ର ଲେଖା ଆଉ ନଟୁଲେଖା ବିଷୟ ପିଲାଙ୍କ ଆଗରେ ଉପସ୍ଥାପନ କରିଥିଲା, ସେଇ ଲହରରେ କହିଲା—"ଶହେ କିବା ଉମର ରେ ! ମନେକରଚ ବିଶାଶହେ ବଞ୍ଚିବ ।"

ଟୋକା ଯୋଡ଼ିକ ପାଣି ସଡ଼ସଡ଼ ହୋଇଥିବାରୁ ଶୀଘ୍ର ଶୀଘ୍ର ନିଜ ବସ୍ତ୍ର ବସ୍ତ୍ରାଣି ଧରି ବାହାରିବାକୁ ବସିଥାନ୍ତି ଘରମୁହାଁ । କିନ୍ତୁ ଚନ୍ଦ୍ରା ବୁଢ଼ା ମୁହଁରୁ "ମୁଁ ତ ବିଶାଶହେ ବଞ୍ଚିବ" ଶୁଣି ଚମକି ପଡ଼ିଲେ ନିଶ୍ଚେ । ତାଙ୍କ ଭିତରୁ ଜଣେ କଥାଟାକୁ ବିଶ୍ୱାସ ନକରିପାରି ଫିଙ୍ଗିଦେଇ ହେଇ ପଚାରିଦେଲା—"କଅଣ କହିଲ—ବିଶାଶହେ ? ମାନେ ଶହେକୋଡ଼ିଏ ?"

"ହଁ ମ, ବିଶାଶହେ ମାନେ ଆଉ କଅଣ ?" ଚନ୍ଦ୍ରା ବୁଢ଼ାର ଶେତା ଶୁଖିଲା ଅଥଚ ମଜ୍ଜା ଶାଳୁଆ କାଠରେ ତିଆରି ହେଲାପରି ପୁରାତନ ଶରୀରର ମୁହଁ ଅଂଶଟା ବେଶ୍ ଚେଙ୍ଗା ହୋଇ ଉଠିଲା ଭଳି ଦେଖାଗଲା ସେତେବେଳେ ।

ପିଲାଯୋଡ଼ିକ ଆଶ୍ଚର୍ଯ୍ୟ ହୋଇଗଲେ । ଜଲକା ହେଲାଭଳି ଦୁହେଁ ଆଖି ପୁରେଇ ଦେଖିନେଲେ ଆଉ ଥରେ ମଣିଷଟାକୁ । ଠିକ୍ ଯେତିକିବେଳେ ଜଣକ ମୁଣ୍ଡକୁ କଅଣ

ଛୁଟିଗଲା କେଜାଣି, ପଗ୍ଭରିଦେଲା ସେ—"ଆଚ୍ଛା ଆଜା, ତମେ ଏତେଗୁଡ଼ାଏ ବର୍ଷ ବଞ୍ଚି କଅଣ କରିବ କହିଲ ? ଜନଗଣନାବାଲା କହୁଥିଲେ—ଆମ ଦେଶରେ ଏତେ ମଣିଷ ହେଲେଣି ଯେ ···"

ଶତାୟୁ ବୃଦ୍ଧ ଚନ୍ଦ୍ରା ମଲିକ ମୁହଁର ଔଜଲ୍ୟ ସେଥିକରେ କଣ୍ଟିତ୍ ମଉଳି ପଡ଼ିଲା ଅବଶ୍ୟ କିନ୍ତୁ ସେ କିଛି ନୁହେଁ। ଦୀର୍ଘ ଶତାବ୍ଦୀଟିଏ ଧରି ସେ ଦେହ, ସେ ମୁହଁ ଯେତେ ଯେତେ ବାରି ମଉଳିଯାଇଚି ଯେତେ ଯେତେ କାରଣରୁ, ସେ ତୁଳନାରେ ପିଲାଙ୍କର କଥା କିଛି ନୁହଁ ନିଶ୍ଚୟ।

"ମୁଁ ବଞ୍ଚିଲେ କଅଣ କରିବ କହୁଚ ? କାହିଁକି କଅଣ ନକରିବ କହୁନ—" ହସିଦେଲେ ଲୋକଟି। ଆଉ ସେ ହସ ଜଣେ ଶତାୟୁର ହସ ହୋଇଥିବା କାରଣରୁ ବା ଆଉ କୋଉଥିପାଇଁ କେଜାଣି, ଟୋକା ଯୋଡ଼ାଙ୍କ ଗାଲରେ ଠୋ ଠୋ ଯୋଡ଼ାଏ ଚଟକଣା କଷିଦେଲାଭଳି ଶୁଭିଲା ଠୋ ଠୋ।

ପିଲାଏ ରାଗିଗଲେ। ଗୋଟାଏ ବୁଢ଼ା, ପୁଣି ଶହେ ବର୍ଷର—ତା ଦମ୍ଭ ଦେଖି ଖାଲ୍ଖାଲ୍ ହୋଇଗଲା ଇସ୍ପାତି ଜଭ ଯୋଡ଼ାକ ତାଙ୍କର।

"ତମର ତ ବୁଢ଼ୀ ମଲାଣି କୋଉକାଳୁ। ପୁଅ ବୁଢ଼ା ହେଇ ତ ଆରବର୍ଷ ମଲେ—ଆମେ ଆସିଥିଲୁ ଖିରପିଠା ଖାଇବାକୁ ଶୁଦ୍ଧଘରକୁ। ନାତି ନାତୁଣୀ ତ ପଗ୍ଭରନ୍ତିନାହିଁ ତମକୁ। ଆଉ ତମେ କହୁଚ ବଞ୍ଚିବ ବଶାଶହେଯାକେ ! ବଞ୍ଚୁଥାଅ—ଆମେ ଯାଉଚୁ।"

କିନ୍ତୁ ଏସବୁ ବି କିଛି କାଟିଲା ଭଳି ଦିଶୁନଥାଏ ବୁଢ଼ାର ମୁହଁଭଙ୍ଗି ଆଗକୁ।

"ଯାଆନ୍ତୁ—ଯାହାର କାଳ ପୂରିଲା ସେ ଯିବ। ନ ପଗ୍ଭରନ୍ତୁ—ଯାହାର ଇଚ୍ଛା ନ ହେବ ସେ ନପଗ୍ଭରୁ। ହେଲେ ଏ ଗଡ଼ିଆରେ କଇଁଫୁଲ ତ ଫୁଟୁଚି, ମୀନ ଖେଳୁଚନ୍ତି, ଗଛରୁ ପତ୍ର ଝଡ଼ୁଚି, ପତ୍ରବି ତ କଅଁଳୁଚି, ନିତି ସକାଳୁ ସୂର୍ଯ୍ୟ ଉଠୁଚନ୍ତି, ଆକାଶରେ ସିନ୍ଦୁରା ଫାଟୁଚି, ପୁଣି ସୂର୍ଯ୍ୟ ବୁଡ଼ୁଚନ୍ତି, ଚନ୍ଦ୍ର ତାରା ଉଦେହଉଚନ୍ତି, ଦିନ ଯାଉଚି, ରାତି···"

"ସ୍ଲେପ୍ ବେ ଶଳା ବୁଢ଼ା ଭାରି ଦେଖେଇହଉଚି···"—ବୁଢ଼ାର କଇଁଫୁଲ, ମୀନ, ଗଛ, ଆକାଶ, କାବ୍ୟ କବିତାଗୁଡ଼ିକ କେଜାଣି କାହିଁକି ଟୋକା ଯୋଡ଼ାଙ୍କ ଭିତରୁ ଜଣକୁ ଖୁବ୍ ଉତ୍ତେଜିତ କରିଦେଲା। ତାର ମନେହେଲା ବୁଢ଼ାଟା ଅତି ସ୍ୱାର୍ଥପର। ଆଉ ସେଇଭଳି ସ୍ୱାର୍ଥପର ଲୋକଗୁଡ଼ାଙ୍କ ଯୋଗୁ ଆଜି ଦେଶରେ, ସାରା ପୃଥିବୀରେ ମଣିଷ ସଂଖ୍ୟା ବଢ଼ୁଚି—ଏଥିରେ ସନ୍ଦେହ ରହିଲା ନାହିଁ ଆଉ ତାର।

ବୟସରେ ସାତ ସାନ, କୋଉ ଅଣନାତି ପଣନାତି ବୟସର ପିଲାଟା ମୁହଁରୁ ଏଭଳି ବଚନ ଶୁଣିଲେ ଯେ କେହି ଯାହା ମନେକରନ୍ତା ଶତାୟୁ ବୃଦ୍ଧ ବ୍ୟକ୍ତିଟି ଯେତେ ଗାଉଁଲି ମଫସଲି ହେଲେ ବି ତାଠୁଁ ଭିନ୍ନେ କିଛି ମନେ କରନ୍ତା ନାହିଁ ନିଶ୍ଚୟ।

କିନ୍ତୁ ଏ କ୍ଷେତ୍ରରେ ଏକ ସମ୍ପୂର୍ଣ୍ଣ ବ୍ୟତିକ୍ରମ ଲକ୍ଷ୍ୟକରିପାରିଲେ ଉଭୟ ପକ୍ଷ । ବୁଢ଼ା ହସିଦେଲେ । ରାଗରେ ଗାରୁଗାରୁ ହେଇ ମଧ୍ୟ ନହସି ରହି ପାରିଲେ ନାହିଁ ଟୋକା ଯୋଡ଼ାକ ।

"ଆଚ୍ଛା ଅଜା, ତମେ 'ବୋର୍' ହବନ ସତରେ ଜମାରୁ ? ସନ୍ତ କହିଲ..."

"ବୋର୍ଡ ? ବୋର୍ଡ କଅଣ ବା ? କ କଜନଷ ସେ ଶଳା ? ଅଂରେଜୀରେ କଅଣ କଥାବାର୍ତ୍ତା ହଉଚ ବେ ମୋ ଆଗରେ ?" କେଜାଣି କାହିଁକି ହସଟା ମରି ମରି ଆସିଲା ବୁଢ଼ା ଲୋକଟାର ମୁହଁ ଉପରୁ । ଶବ୍ଦଟା ସମ୍ପୂର୍ଣ୍ଣ ନିରର୍ଥକ ଆଉ ବିଦେଶୀ ଭଳି କାନକୁ ଶୁଭୁଥିଲେ ମଧ୍ୟ ବୁଢ଼ା କଅଣ ସନ୍ଦେହ ବାରିନେଲା । ଗୋଟାଏ ଖରାପ କଜନଷ ନାକରେ ଶୁଂଘୁ ଶୁଂଘୁ କଜନଷଟାର ଦ୍ରବ୍ୟଗୁଣ ନାକ ବାରିନେଲାଭଳି ଶତାୟୁର ନାକ କୁଞ୍ଚେଇ ହୋଇଗଲା । ଦେହଟା ମଧ୍ୟ ଝିମିଝିମି ହେଉଗଲା ତାର ।

ଏତେବେଳଯାକେ ଟୋକାଯୋଡ଼ିକ ଭିତରୁ ଯେ ପ୍ରଥମେ ଉଦ୍ଭାବନ କରିଥିଲା ସେ ଶବ୍ଦ ମନ୍ତ୍ରର ପ୍ରୟୋଗ ପଦ୍ଧତିକୁ—ସେଇ ଟୋକା ଏଥର ଉତ୍ସାହିତ ହୋଇଉଠିଲା । କହିଲା— "ଅଂରେଜୀ ନୁହଁ ଅଜା ! ଏ ଆମ ଓଡ଼ିଆ କଥା—ଖାଣ୍ଟି ଓଡ଼ିଆ କଥା ପରା—ବୋର୍ଡ ! ବୋର୍ଡ ! ବୋର୍ଡ ! ତମେ ତ ଖବରକାଗଜ ପଢୁନ, ଜାଣିବ କେମିତି !"

"ଆଜିକା କାଗଜ ଦେଖିଲଣିଟି ଅଜା ?" ଆର ପିଲାଟି ଉହ୍ନା ଧରିପକେଇଲା ସ୍ୱରରେ କହିଲା, "ଗୋଟିଏ ଗର୍ଭବତୀ ନାରୀକୁ ଆଠଜଣ ଗୁଣ୍ଡା ନଈବାଲିକି ଟେକିନେଲେ..."

"ହେ କୃଷ୍ଣ ! ହେ ରାମ !"...ଶତାୟୁ ବୃଦ୍ଧ ଚନ୍ଦ୍ରାମଣି ହାକରି ଟୋକା ଯୋଡ଼ାଙ୍କ ଆଖିକୁ ଅନେଇ ପଚାରିଲେ—"ଏଁ ? କଅଣ କହୁଚ ମ ! ତେମେ ଯୋଡ଼ାକ ବାୟା ହେଇଗଲଣି କରେ ? ଖବରକାଗଜରେ ବାହାରିଚ ଏକଥା ? ଗର୍ଭବତୀ ନାରୀକୁ ହରିଲେ...?"

"ହରିଲେ ନୁହଁ ଅଜା...ଗୁଣିଲେ, ଗୁଣିଦେଇଗଲେ ଆଠଟା ହେଁ ବଡ଼ ହେଁ ମୋଟା ପହିଲମାନଆ ଗୁଣ୍ଡା...", ଗୋଟିଏ ଟୋକା କଥାଟିକୁ ଏଇଭଳି ଫେଣେଇଲାରୁ ଆର ଟୋକା କହିଲା—"ସେଇଟାକୁ ଆଜିକାଲି କହୁଛନ୍ତି ନାରୀଧର୍ଷଣ । ଖବରକାଗଜରେ ତ ନିତି ବାହାରୁଚି ଏ ନାରୀଧର୍ଷଣ ଖବର—ଦିନକୁ ତିନିନେ ତିନିନେ ଦମ୍ପାଦ । ଖାଲି କ'ଣ ଏଇଆ— ହତ୍ୟାକାଣ୍ଡ—ବାପ ପୁଅକୁ ହାଣିଲା, ପୁଅ ମା'କୁ ହାଣିଲା—ଏ ତ ମାମୁଲି କଥା । ଏବେ କାଗଜରୁ ପଢ଼ିବ ଆହୁରି ମଜା କଥା । ଏଇତ ବାହାରିଚ କାଲିକା କାଗଜରେ—ଦଲେ ସବର୍ଣ୍ଣ କେମିତି ହତ୍ୟାକଲେ ହରିଜନଙ୍କୁ—ଜାଣିଚ ନା ? ରାତି ଅଧରେ ସବର୍ଣ୍ଣ ସାଇରୁ ଉଠିଲେ ପଂଝାଏ—ପଶିଗଲେ ହରିଜନ ସାଇରେ । ବାହାରୁ ଛାତି କବାଟ ଆଗରେ ଠେଙ୍ଗା ବାଡ଼ି ବନ୍ଧୁକ ଧରି ଜଗିଲେ । କୁଡ଼ଆରେ ଦେଲେ ଚେଙ୍ଗି ନିଆଁ ! ତା ପରେ ପ ଗୋଟାକ ପରେ ଗୋଟାଏ ପୋଖରୀରେ ବାଲିଆ ପିଟିଲା ଭଳି ପିଟି ଦେଇଗଲେ—ଯେ ମୁଣ୍ଡ

କାଢ଼ିଲେ କୁଡ଼ଆ ବାହାରକୁ— ବୁଢ଼ାବୁଢ଼ୀ ଛୁଆ ମାଇକିନା କେହି ବାଦ୍ ପଡ଼ଲେ ନାହିଁ ବାଡ଼ଆରୁ । ବୁଝିଲ !"

ଶତାୟୁର ସ୍ତିମିତ ଦୃଷ୍ଟି ଟୋକା ଯୋଡ଼ାଙ୍କ ଚଙ୍ଗଚଙ୍ଗିଆ ମୁହଁ ଉପରେ ସେମିତ ହାଁକର ସ୍ଥିର ହୋଇ ରହିଥାଏ । ଏଇ ଅବସରରେ ଜଣେ ଟୋକା ଟେଡ଼େଇ ଦେଖିଭଳ କହିଲ—"ଆଉ ସୁହିଁଚ କ'ଣ ଅଜା ! ତମେ ତ ହରଜନ ଲୋକ···"

ଶତାୟୁ ଚନ୍ଦ୍ରା ମଲକ ଚମକପଡ଼ଲ । ଆଖି ଯୋଡ଼ିକ ତାର ବୁଜହେଇଗଲ ।

ପିଲ ଯୋଡ଼ାକ ବହୁ ବସ୍ତାନି ଧର ଉଠୁଥିଲେ । ଗଲବେଲେ ବୁଢ଼ା ତଥାପି ଆଖି ବୁଜ ବସିଚ ଦେଖି ହସାହସି ଟିକିଏ ହେଲେ । ତଥାପି ବୁଢ଼ାଠୁଁ ବିଦାୟ ନେବା ଢଙ୍ଗରେ ପଗ୍ଭରଲେ—"ଅଜା, କାଲ୍ ଏଠି ବସିଥିବଟି ? ଆମେ ଆଣିବୁ ସେ କାଗଜ ସବୁ ଯୋଉ-ଥିରେ ବାହାରଚ ସେ ନାସ୍ତାପର୍ଷଣ, ହରଜନ ପୋଢ଼ ··"

ଶତାୟୁ ଚନ୍ଦ୍ରା ମଲକର ଆଖି ଖୋଲଗଲ । ଟୋକା ଯୋଡ଼ିକୁ ନ ଅନେଇ ଅନେଇଛ ବୁଢ଼ା ଝୁବ ଗାଡ଼ଆ ଆଡ଼େ । ଝୁବ ଗାଡ଼ଆର ଗୋଳ ପାଣିରୁ ମୀନ କେତୋଟି ମୁହଁ କାଢ଼ୁଥାନ୍ତି ସେଇଷିଟିକା । ସେଇ ମୀନଙ୍କୁ ଅନେଇ ବୁଢ଼ା କହିଲ—"ଆରେ କାଲିକା କଥା କାଲି—ଆଜି କ'ଣ ହଉଚ ଦେଖ ଆଗ । ହଉ, ଯାଅ—ଆସିବ କାଲ୍ । ଆଣିବ ତମ କାଜେ । ପଢ଼ିବ···ଶୁଣିବା...ଶୁଣିବା !"

ଟୋକା ଦଇଟା ହସିଲେ ମୁରୁକେଇ ମୁରୁକେଇ । ଓଦା ସଡ଼ସଡ଼ ପେଣ୍ଟ୍, ଝାମ୍ପୁରୁ ଝାମ୍ପୁରୁ ବାଳ, ନାଲ ନାଲ କୁମ୍ଭାଟୁଆ ଆଖି ··କ୍ରମେ ଏସବୁ ଉଭେଇଗଲ ଶତାୟୁ ବୃଦ୍ଧ ଚନ୍ଦ୍ରା ମଲକର ଦୃଷ୍ଟିରୁ । ବୁଢ଼ା ଆଶ୍ୱସ୍ତ ହେଲ । ହସିଲାଭଳ ହାଇଟିଏ ମାର ନିଜକୁ ନିଜେ ଶୁଣେଇଲା ଭଳି କହିଲ—"ହ-ର-ଜ-ନ ! ଶଳା, ଏଇ ଅଭାଷା ଶୁଣିବାକୁ ମଣିଷ ଜୀଇଁବ ! ଆରେ, ଏ ଅଭାଷା ଏ ବାଷ ବାକ୍ୟ ସବୁ କିଏ ସର୍ଜିଲ, ନଷ୍ଟସ୍ରେଷ୍ଠ, ବସ୍ତସ୍ରେଷ୍ଠ, ନିକୃଷ୍ଟଶ୍ରେଷ୍ଠ, ଅମୃତ ବାକ୍ୟଗୁଡ଼ାକୁ କିଏ ତମର ସ୍ରେଷ୍ଠକର ନେଲାଚେ ?"

ପରଦିନ ସ୍କୁଲ୍ ଯିବା ବାଟରେ ପିଲଯୋଡ଼ାକ ନିଜ ନିଜ ବସ୍ତାନୀରେ ଦଉକୁସଉ ଖଣ୍ଡେ ଖଣ୍ଡେ ପୁରୁଣା ଖବରକାଗଜ ଗୁଞ୍ଜିଗାଞ୍ଜିକର ଆଣିଥିଲେ । କିନ୍ତୁ ଗାଁ ଭିତରେ ହରଜନ ସାଇ ପାଖ ଝୁବ ଗାଡ଼ଆ ହୁଡ଼ାରେ ଚନ୍ଦ୍ରା ବୁଢ଼ା—ଗାଁର ଶତାୟୁ ଚନ୍ଦ୍ରା ମଲକ ବୁଢ଼ାର ଚିରନ୍ତନ ଉପସ୍ଥିତକୁ ହଠାତ୍ ଅନୁଭବ କର ନପାର ସେମାନେ ପଡ଼ଗଲେ ମହା ସନ୍ଦେହରେ ।

"ଶଳା ବୁଢ଼ା ଲୁଚଲ କବେ ?···" ଜଣେ ପଗ୍ଭରଲାରୁ ଆଉ ଜଣେ ହସିପକେଇ କହିଲ—"ଡରଗଲ ପାଠକୁ—ଖବରକାଗଜଟା ଆଣିବୁଟି ?"

• ଦୁହେଁ ଏହଭଳ ଅଙ୍କାତାମଡ଼ା କର ଉଠିଲେ ଗାଡ଼ଆ-ବନ୍ଧ ଉପରକୁ । ହଠାତ୍ ତାଙ୍କ ଭିତରୁ ଜଣେ ପାଟିକଲ, "ଆରେ—ଶଳା ଏଇଠି ଲୁଚଚରେ ଲୁଚତ !"

"କୋଉଠି, କୋଉଠି ?"

"ହେଇ ସେଠି । ଯୋଉଠି କଇଁକଡ଼ ହଲୁଚ—ମୀନ ଖେଳୁଚ—ସେଇଠି ସେଇଠି ପଶ—"

ଟୋକାଯୋଡ଼ାକ ଅନେଇଥାନ୍ତି । ତାଙ୍କ କାନ୍ଧରୁ, ବହି ବସ୍ତାନି ଭିତରୁ ପୁରୁଣା ଖବରକାଗଜ ଦୁଓଟି ପୂର୍ବକାଳର ଧନୁର୍ବିଦ୍ ବୀରଙ୍କ ତୂଣୀରରୁ ମୁଣ୍ଡ ଟେକି ଅନେଇଥିବା ଯୋଡ଼ିଏ ମହାଭସ୍ତଙ୍କର ଅସ୍ତ୍ର···ବ୍ରହ୍ମାସ୍ତ୍ର କି ପାଶୁପତଶର···ଅନେଇ ରହିଥାନ୍ତି ।

କଇଁକଡ଼ ହଲୁଥାନ୍ତି । ମୀନ ଖେଳୁଥାନ୍ତି । ଟୁବ ଗାଡ଼ିଆର କାଲିକା ଗୋଳିଆ ପାଣି ଆଜି କାଚକେନ୍ଦୁଭଳି ସଫା ଦିଶୁଥାଏ । ସେଇ ପାଣିରେ ଟୋକାଯୋଡ଼ାଙ୍କ ଗୁଳ ପଡ଼ୁଥାଏ··· ଅବିକଳ ଯୋଡ଼ାଏ ପୂର୍ବକାଳିଆ ବୀରଙ୍କ ଭୂତଭଳି ।

---

# 'ଗ୍ଲଲ୍ ସେଇଠିକି ଯୋଉଠି ଭଗବାନ ଅଛନ୍ତି'

"ଏଠି ଆମର ଗୋଟାଏ ଉଡ଼ାଜାହାଜ ଦୁର୍ଘଟଣା ଘଟନ୍ତା ନାହିଁ—"

ଗାଁ ଟୋକାମାନେ ପ୍ରାୟ ଅଧିକାଂଶ ଦିନ ଏମିତି କଥାବାର୍ତ୍ତା ହୁଅନ୍ତି—ଆକାଶକୁ ଅନେଇ କରି—ଯେତେବେଳେ ବହୁତ ଉଚ୍ଚରେ, ବାଦଲ ଉପରେ, ନେଳୀ ବା ଛେନା-ଛତୁଆ ଆକାଶକୁ ଦଫାଲ କରି ଚିରଦେଇ ଗୋଟାଏ ଜେଟ୍ ଉଡ଼ାଜାହାଜ ବଡ଼ସକାଳୁ ଗାଁ ଉପର ଦେଇ କୁଆଡ଼ୁ କୁଆଡ଼କୁ ଉଡ଼ି ଗ୍ଲଲଯାଏ—ଏକ ଲମ୍ବା ଧୂଆଁର ଗାର କାଟିଦେଇ ।

"ଶଳାଗୁଡ଼ାକ ଭାରି ଅଏଇସ୍‌ରେ ଅଛନ୍ତି, ଯାଉଁକନା ଉଡ଼ିଯାଉଚନ୍ତି ମୁଣ୍ଡ ଉପରେ ଆମର...ଓଃ କି ଫୁଟାଣି !"

"ଫୁଟାଣି ? ବଜ୍ଜାତ୍—ବଜ୍ଜାତ୍ ବାଦ୍‌ଶା ! କେତେ ଟଙ୍କା ଲୁଟୁଚନ୍ତି ଦେଖୁନ ! ନହେଲେ ଆମକୁ ସାଇକଲ୍ ଖଣ୍ଡେ ମିଳୁନି—ଭାତ ମୁଠାଏ ମିଳୁନି—ଲୁଗା ଖଣ୍ଡେ ମିଳୁନି—ଆଉ ଏ ଶଳେ ପ୍ରତିଦିନ ଉଡ଼ୁଛନ୍ତି ଆମ ମୁଣ୍ଡ ଉପରେ । ପୁଣି ଜେଟ୍ ଉଡ଼ାଜାହାଜରେ ! ଆଚ୍ଛା, ହଇରେ, ଏ ହ୍ୟାପ ଜାହାଜଗୁଡ଼ାକ କିପରି କୁଆଡ଼େ ଯାଉଚି ଆସୁଚି କରେ ? ଏଃ, କି ବେଗ ଲୋ ବାପ ! କାନରେ ଶବ୍ଦ ନବାଜୁଣୁ ଆଖିରୁ ଅନ୍ତର୍ଦ୍ଧାନ ! ଶଳା ଶବ୍ଦଭେଦୀ ବାଣ ମାରିଲା ପ୍ରାୟେ ଯାଉଚି କେମେତେ ଦେଖୁନ ! ଓଃ ପଡ଼ନ୍ତା ନାହିଁ ଗୋଟାଏ ଖଣ୍ଡେ ଆମର ଏଠେଇଁ—ଦେଖନ୍ତେ କିଏ କିଏ ଯାଉଚନ୍ତି, କିଏ କିଏ ମହାତ୍ମା ସେମାନେ !"

"ଧାତ୍ ! ଏ ସବୁ ଉଡ଼ାଜାହାଜ ପଡ଼େନି ଏତେ ସହଜରେ । ଆଉ, ପଡ଼ିବ ଯଦି ନା ମଞ୍ଚି ପକେଇବ, ଚୁନ୍‌ଭୁତ୍ କରିଦେବ, ଜାଳି ଦବଟି ଘରଦ୍ୱାର ଗାଁଗଣ୍ଡା ଚତୁର୍ଦ୍ଦିଗ ! କଅଣ କମି ଫୋର୍ସରେ ପଡ଼ିବ ଭାବୁଚ ? ଖବରକାଗଜରେ ପଢ଼ନି—ଯୋଉଠି ଉଡ଼ାଜାହାଜ ପଡ଼େ ସେଠି କେମିତି ମଞ୍ଚି ପକାଏ, ଦଳିଚକଟି ଜାଳିପୋଡ଼ି ନଷ୍ଟଭ୍ରଷ୍ଟ କରିଦିଏ ! ହେ ଲୋକତ ମରିବେ—ହାତ-ଗୋଡ଼-ଚମ୍ପବର୍ଣ୍ଣି ମିଳିବ ନାହିଁ ତାଙ୍କର । ତାଙ୍କ ସାଙ୍ଗେ ସାଙ୍ଗେ ଆମେ ଯିବା ଯେ..."

"ଆଃ, ଆମେ କଣ କହୁଚୁ ଆ ପଡ଼ ଅମ ମୁଣ୍ଡ ଉପରେ ! ପଡ଼ିବ ଯଦି ପଡ଼ନ୍ତା ଏଇ ମଦର ତଳ ଗଡ଼ାରରେ କି ନଈ ବାଲିରେ କି ଗ୍ରମଗ୍ଲା ଯାଏ ତୋଟାପାଖ ଖେଳ

ପଡ଼ିଆରେ ଯୋଉଠି ନୂଆ କଲେଜ ପିଲେ ଏବେ ଫୁଟ୍‌ବଲ ଖେଳୁଚନ୍ତି···ସେମିତିକଆ ଜାଗାରେ ନା, ଆଉ କଣ ଆମ ମୁଣ୍ଡ ଉପରେ !"

"କଲେଜ ପିଲ ! ଆଉ କହନା କହନା ସେ କଥା ! ଆରେ, ଦେଖିଲଚି ସେ ପିଲେ କି କାଣ୍ଡ କଲେ ସେଦିନ ! ଗୃଣଗୃଣଟା ଲଇନ ବସ୍‌କୁ ଲଇନ୍‌ରୁ ଖସେଇ ପକେଇ କେମିତି ପୂରେଇଦେଲେ ବଲ ଭିତରେ ! କେମିତି ଲଗେଇ ଦେଲେ ନିଆଁ ! ଗାଡ଼ି ଗୁଡ଼ାକ ହୁରୁହୁରୁ ହେଇ ଜଳିଗଲ ଜଉଘର ଭଳି । ମଣିଷଗୁଡ଼ାକ କି କାଲୁବାଲୁ ହେଇ ଡେଇଁଡାଇଁ ପଳାଉଥିଲେ—କି ଭୟଙ୍କର ଦୃଶ୍ୟ ସେ । ଆଚ୍ଛା, ମଟରଗାଡ଼ି ଗୁଡ଼ାକ ସବୁ ଏମିତି ପାଲଗଦା ଭଳି ଜଳିଯାଏ ଟିକିଏ ନିଆଁ ଚେଙ୍ଗି ଦେଲେ—ଉଡ଼ାଜାହାଜ ଗୁଡ଼ାକ କେମିତି ନଜଳୁଥିବ କହିଲୁ ! ସେଥିରେ ପରା କୋଉ ଗୋଟାଏ ଦୋପରି କସମ ତେଲ ଥାଏ—ମାଇଲାଏ ଦୂରରୁ ନା କଅଣ ନିଆଁ ଧରିପକାଏ !"

"ନାହିଁମ ! ମାଇଲାଏ ଦୂରରୁ !"

"ନାହିଁ ଆଉ କଅଣ ! ସହରରେ ଦେଖିନୁ···ପେଟ୍ରୋଲ ପମ୍ପ୍ ଆଗ ପାଖରେ ସିଗ୍ରେଟ୍ ଖାଇବାକୁ କାହିଁକି ମନା କରାହେଇଥାଏ ଯେ—"

"ଓଃ, ସେଥିରୁ କଅଣ ମିଳିବ ଆମକୁ ହୋ ! ଆମର ଦରକାର ଏଠି, ଆମର ଏଇ ଅଞ୍ଚଳରେ ହଉ ଗୋଟାଏ ଦୁର୍ଘଟଣା, ବଡ଼ ଧରଣର, ଖୁବ୍ ବଡ଼ ଧରଣର—ପଡ଼ୁ ଗୋଟାଏ ଉଡ଼ାଜାହାଜ—ବିଶେଷତଃ ଗୋଟାଏ ଏମିତିକଆ ଜେଟ୍ ଉଡ଼ାଜାହାଜ—ଯୋଉଥିରେ ବସିଥିବେ ସେମାନେ ବଡ଼ ବଡ଼ ନେତାଏ, କି ବଡ଼ ବଡ଼ ପୁଞ୍ଜିପତି, ଦେଶୀ କି ବିଦେଶୀ ପଞ୍ଚାଏ ! ହେ'ଲା ଗୋଟାଏ ମଜା । ଆଖି ଦେଖନ୍ତା ଗୋଟାଏ ଦୃଶ୍ୟ । ଲାଗନ୍ତା ଗୋଟାଏ ହୋହଲ୍ଲା ।"

"ଖାଲି ସେତିକି ! ଶଳା ମିଳିବ ଯାନ୍ତା କିଛୁ ମାଲମତା ।"

"ଆଃ, ମୋର ଗୋଟାଏ ଟେପ୍‌ରେକର୍ଡ଼ର ଦରକାର ଥିଲା ବେ !"

"ଆଉ ଆମର ସତେକି ଦରକାର ନାହିଁ କିଛୁ—ଶଳା ପାଞ୍ଚବର୍ଷ କରାଣୀ ଗିରିକଣ୍ଟି କଲିଣି ଯେ ଭଲକରି ଟେଡ଼ିଓ ଟଣ୍ଡେ କିଣି ପାରିଲି ନାହିଁ ଯେ ସବୁ ଶନିବାର ରାତିରେ ମାଇପ ଉପଯୋଗିତ ଖଟ ଉପରେ—"

"ହେଃ ହେଃ ହେଃ···"

"କ'ଣ ହେଃ ହେଃ ବେ—ସତ କହିଲେ···ଫାଟେ ! ଆରେ କହିଲୁ—ଆର ଝଡ଼ାରେ ଡାଲି କଲେ ଦର ଥିଲା କେତେ, ହେଲା କେତେ ଏ ହପ୍ତାରେ ! ତେଲ ଥିଲା କେତେ ହେଲା କେତେ ! ଟିକି ଗହମ କଣ୍ଟ୍ରୋଲ··· ମିଳୁଚି ତମକୁ ? ସିମେଣ୍ଟ ବସ୍ତାକ ପରା ହେଲାଣି ·ଶହେ ! ଏଥିରେ ହେଃ ହେଃ ହେଃ ହଉଚୁ କ'ଣ ଘୋଡ଼ାଦେଡେ—"

"ଘୋଡ଼ାଦେରେ ନୁହଁ ଗୁଡ଼ୁଆଦେରେ ! ଓ୍ୱାଇଲ୍ଡ କଥା—ଏ ମୋର ଦେଶରେ ହଜାର ଦର ଛୁଟୁଚ ଘଡ଼ିକ ଘୋଡ଼ା ଛୁଟିଲା ଦେରେ, ସେଥା ଗୋଟାଏ ଗୁଡ଼ୁଆଙ୍କ ଦେଶ ନା ଆଉ କ'ଣ ! ଏଇ ଗୁଡ଼ୁଆ ପଞ୍ଚାଳକ ବସିଥିଲେ ସେ ଘୋଡ଼ାରେ—ଏବେ ଘୋଡ଼ା ଗୁଡ଼ ବସିଲେଣି ଯାଇ ଜେଟ୍ ବିମାନରେ । ଦେଖୁନା ଶଳାଗୁଡ଼ାକ କେମିତି ଉଡ଼ିଯାଉଚନ୍ତି ଲମ୍ବା ଧୂଆଁ ଗୁଡ଼-ଦେଇ ଗାଣ୍ଡିଆଡ଼େ ପୁଣି ଆମ ମୁଣ୍ଡ ଉପରେ ! ଆଚ୍ଛା, କହୁଲ—ଯାଉଚନ୍ତି ଭଲ କୁଆଡ଼େ ନଇଥ ସକାଳେ ଆଉ ଫେରୁଚନ୍ତି ଘର ଅଧରେ । କେତେ ଟଙ୍କା ଖରଚ ହେଉଥିବ ନଥ ତାଙ୍କ ପିଛାରେ ?"

"କିଏ ଜାଣେ ହୋ ! ଆମେତ ଏଇଠି ବଇଚୁ ସାତପୁରୁଷୀ କ ଶହେ ପୁରୁଷୀ—କିଏ ଜାଣେ ! ଆମର ଏଇ କିଆ ବଣ, ତାଳ ବଣ, ଏଇ ନଈ, ଏଇ ଗୋହିରୀ, ଏଇ କୁଡ଼ିଆ ଘର, ଏଇ ଭଙ୍ଗା ମନ୍ଦିର..."

"ଭଙ୍ଗା ମନ୍ଦିର ! ହୁଁ ! କିନ୍ତୁ ଭଙ୍ଗା ମନ୍ଦିର ଭିତରେ ଯେ ପ୍ରତ୍ୟକ୍ଷ ଠାକୁର—ଭୁଲି ଯାଉଚ କି ସେକଥା ! ତମେ ତ ଜାଣ ଆମର ଏ ଠାକୁର କେଡ଼େ ପ୍ରତ୍ୟକ୍ଷ । ଶହ ଶହ କ'ଣ ହଜାର ହଜାର ମାଇଲ ଦୂରରୁ ସାଧୁସନ୍ଥ ଆସୁଚନ୍ତି ଏ ଠାକୁରଙ୍କ ଦର୍ଶନକୁ । ଗଲବର୍ଷ ହିମାଳୟରୁ ଯୋଉ ମହାତ୍ମା ଆସିଥିଲେ କ'ଣ କହିଗଲେ...ମନେ ନାହିଁକି ? କହିନଥିଲେ—ଧର୍ମ ଆଉ କୋଉଠି ନାହିଁ, ଅଛି ଆମର ଏଇ ଅଞ୍ଚଳ ଖଣ୍ଡିକରେ—କହିନଥିଲେ ? କାହିଁକି କହିଥିଲେ କହୁନ ! ଏଇ ଭଙ୍ଗା ମନ୍ଦିର ଖଣ୍ଡିକରେ ବସିଚନ୍ତି ଯେଉଁ ଠାକୁର ମୂର୍ତ୍ତି ତାଙ୍କରି ପାଇଁ ତ ! କହିନଥିଲେ ଏହି ଠାକୁରଙ୍କ ଯୋଗୁ ଧର୍ମ ତଥାପି ବଞ୍ଚିଚ ଏଇ ଅଭାଏ ଭୂଇଁ ଖଣ୍ଡିକରେ ? କହିନଥିଲେ—ଏଠି, ଆମ ଗାଁର ମଣିଷମାନେ ମଣିଷ ନୁହନ୍ତି, ଦେବତା । ତେବେ ଆମେ କିଆଁ ନନ୍ଦବା ଆମକୁ ! ଆମ କିଆବଣ, ଅମଗ୍ଡବଣ, ଆମକୁ ବଡ଼ । ଆମ ନଈ, ଆମ କୁଡ଼ିଆ, ଆମ ଭଙ୍ଗା ମନ୍ଦିର ବଡ଼ ଆମକୁ ।"

"ହେ ଯାଃ—ବଡ଼ ଆମକୁ ! ଗଆଁର ବଡ଼—ବଡ଼ ନା ଫଡ଼ । ଯୁଗ ଚଳେଣି କୁଆଡ଼େ, ଆଉ ଏଠି ଗୁଲଛ ବଡ଼ ! ପୁଣି କଅଣ ନା ଧର୍ମ, ଠାକୁର—ଭଙ୍ଗା ମୂର୍ତ୍ତି, ଭଙ୍ଗା ମନ୍ଦିର—ଯାବତ୍ ବାଜେ କଥା । ଅମ କିଆ ବଣ, ଅମ ଅମଗ୍ଡ ବଣ, ପୁଣି ଆମ ମଣିଷ କୁଆଡ଼େ ଦେବତା ! ଦେବତା ନା ଦେ—ବତା । ହ୍ୟାପ ଯାବନ୍ତ୍ ଗ୍ଲେଚ । ତାକୁଙ୍କ ସନ୍ଧାନେ । କେମିତିଆ ଦେବତା ଦେଖୁନ କି ? ଗଲା ହପ୍ତାରେ ଆମ ଏଇ ଦେବତା ଦଳେ କଅଣ କଲେ କହୁନ ! ହଇଓ ନାରୀଧର୍ଷଣ କ ଜନକ ଆମ ଏ ଖଣ୍ଡମଣ୍ଡଳରେ କିଏ ଦେଖିଥିଲ କି ଶୁଣିଥିଲ ! କିନ୍ତୁ ନିଜ ଆଖିରେ ତ ଦେଖିଲ—ଦଳେ ଛତ୍ରୀ କ କାଣ୍ଡ କରି ଦେଲେ ଆମ ଏ ଅଞ୍ଚଳରେ । ଜଣେ ମାଇପିକି ପୁଣି ଆଠ ଦଶ ଜଣ ... ଛି, ଛି, ଛି । ଏ ପାଷଣ୍ଡ ସବୁ ବାହାରିଲେ କୋଉଠୁ...ଏଇ ଅଞ୍ଚଳରୁ ଟି—ଯୋଉଠି ତମ ହିମାଳୟ

ଯୋଗୀ କହୁଗଲେ ଧର୍ମ କୁଆଡ଼େ ବଢ଼ିଚ, ଜଳ ଜଳ କରି ଅଡେଇଚ ସେଇ ଭଙ୍ଗା ମନ୍ଦିର ଖଣ୍ଡିକର କାନ୍ଥ ଫାଟ ସନ୍ଧିରୁ ନା କଅଣ ?"

"ହଁ ତ···ଧର୍ମ ଅନେଇଚ, ବିଶ୍ୱ ଅନେଇଚି । ନହେଲେ ଦେଖୁଚ କିଏ କହୁନ । ଏ ଯାବନ୍ତ୍ ଧର୍ମଛଡ଼ା, ପ୍ରକୃତିଛଡ଼ା, ପାଷଣ୍ଡ ବୋଲି କହୁଲ ଯାହାଙ୍କୁ ସେ ନଗ୍ନଧମଗୁଣ୍ଡାଙ୍କର ଅପକର୍ମମାନଙ୍କୁ ? କିଏ ଅନେଇଚ, କିଏ ଡରିଲୁଚ, ଆଉ କଉଚ ଯେ ଏ କର୍ମ କର୍ମ ନୁହେଁ—ଦୁଷ୍କର୍ମ, ଅଧର୍ମ, ମହାପାପ । କହୁଚ କିଏ ଏ ବାକ୍ୟ କହୁନ ? ସେ ଯେ କହୁଚ ସେ ଦେବତା ନା ଆଉ କିଏ ?

"ଦେବତାଫେବତା କିଛି ନୁହଁ—ସବୁ ଗାଲୁ, ସବୁ ଗାଲୁ···"

"ଯଦି ଗାଲୁ ତେବେ ହଉ ପରୀକ୍ଷା, ପରୀକ୍ଷାଟାଏ ହେଇଯାଉ ।"

"କି ପରୀକ୍ଷା···?"

"କି ପରୀକ୍ଷା ? କାହିଁକି ? ଏଇ ଉଡ଼ାଜାହାଜ ଦୁର୍ଘଟଣା । ଆଜି ତ ଗଲା । କାଲି ସକାଳୁ । ଆସ ସମସ୍ତେ । ବାହାର ଗାଁବାଲା । ସ୍ତ୍ରୀ ପୁରୁଷ ବୁଢ଼ାବୁଢ଼ୀ ଛୁଆ ପିଲା ସମସ୍ତେ ଯଦି ବାହାର ଆସିବେ ଘରୁ, ଏକାବେଳକେ ଅନେଇବେ ଆକାଶକୁ—ଏକାବେଳକେ ଡାକ-ଦେବେ, ଆରେ—ଆମେ ଯଦି ଧର୍ମରେ ଅଛୁ, ତେବେ ତେମେସବୁ ଯେ ଯାଉଚ ହୋ ଗଗନମାର୍ଗରେ, ତେମେ ଦେବ ଦାନବ ଗନ୍ଧର୍ବ କିନ୍ନର ଯେ କେହି ହୋଇଥାଅ··· ଓହ୍ଲେଇଆସ—ଓହ୍ଲେଇଆସ । ତମ ଶୂନ୍ୟ ରଥର ଚକ ବନ୍ଦ ହୋଇଯାଉ—ବନ୍ଦ ହୋଇଯାଉ । ଆସ ଖସି—ଖସି ଆସ । ଦେଖିବା କିଏ ସବୁ ଯାଉଚ ତମେ ଆମ ମୁଣ୍ଡ ଉପରେ କନ୍ଦନ ପ୍ରଭଞ୍ଜନ—ଦେଖାଦିଅ, ଦିଅ ଦର୍ଶନ । ବାଜି ପକେଇ କହୁବି—ଯଦି ସେ ଉଡ଼ାଜାହାଜ ବାଧ୍ୟ ନହବ ଓହ୍ଲେଇ ପଡ଼ିବାକୁ !"

"ହେଃ ଯାଃ—ଗାଲୁଆ ଡହର ଡମ୍ଫା କ'ଣ ଆଉ ଗଛରେ ଫଳନ୍ତି ! ଉଡ଼ାଜାହାଜ, ପୁଣି ଜେଟ୍—କୁଆଡ଼େ ଖସିପଡ଼ିବ, ଗଳିପଡ଼ିବ କଥାକଥାକେ—ପୁଣି ଏଇ ଡହର ଡମ୍ଫା କଥାରେ । ଧାତ୍ ।

× × ×

କିନ୍ତୁ ଚବିଶ ଘଣ୍ଟା—ସକାଳରୁ ସକାଳ ଚବିଶ ଘଣ୍ଟା ମଧ୍ୟ ସରିନାହିଁ କଣପାଣିଲା ନାହିଁ ଧର୍ମର ପ୍ରଭାବ ସତେବା ! ପ୍ରାୟ ଦିପହରର ପୁର୍ବା ଗୋଟାଏ ଅଦ୍ଭୁତ ଆଧିଭୌତିକ ଶବ୍ଦରେ ଉଦ୍‌କୁନ୍ଦା ନାମକ ସେଇ ଗ୍ରେଣ୍ଟିଆ ନଈକୂଳିଆ ଗାଁଟି କମ୍ପିବାକୁ ଲାଗିଲା । ଓଃ କି ଶବ୍ଦ, କି ରାବ, କଳକଳା ଶବ୍ଦରେ ବାପ । ସତେ କି ଶୂନ୍ୟରୁ ସାତଥର କ'ଣ ଶହେଥର କି ହଜାରେ ଥର ଘଡ଼ଘଡ଼ି ମରିଲା ଭଳି ସେ ଶବ୍ଦ ପ୍ରଥମେ ଚଡ଼ଚଡ଼ ହେଇ ଫାଟିଲା ଭଳି ଶୁଣାଗଲା ଗାଁ ଉପରେ । ସେ ଶବ୍ଦ ଶୁଣିଲା ମାତ୍ରେ ମନେହେଲା ଯେମିତିକି ଆକାଶଟା—ସେଇ ବିଶୁଦ୍ଧ ନେଳୀରଙ୍ଗର କପଡ଼ା ଭଳି ବିଶାଳ ବିସ୍ତୃତ ଆକାଶଟା—

ଫଡ଼-ଫଡ଼-ଫଡ଼-ଫଡ଼ ହୋଇ ଚିରି ଟୁକୁରା ଟୁକୁରା ଖଣ୍ଡ ଖଣ୍ଡ ହୋଇ ଫାଡ଼ି ହୋଇଗଲା, ଆଉ ସେ ବିଦୀର୍ଣ୍ଣ ଫାଟରୁ ଯିଏ ଖସି ପଡ଼ିଲା ସେଇଟା ଗୋଟାଏ ଉଡ଼ାଜାହାଜ ତ ନୁହେଁ— ଗୋଟାଏ ଦୁର୍ଗ, ଉଡ଼ନ୍ତା ଦୁର୍ଗ ସେ । ଆଉ ସେ ଦୁର୍ଗଟା ଘାଇଁଘାଇଁ ହୋଇ ଚକ୍କର କାଟିକାଟିକା ଉକୁନ୍ଦା ଗାଁ ଉପରେ ଏତେ ପାଖରେ ଉଡ଼ି ବୁଲୁଥିଲା ଯେ ଯଦି ଆଉ ଟିକିଏ ତଳକୁ ଖସିଥାନ୍ତା ତେବେ ହୁଏତ ମିଶ୍ରଘର ନଡ଼ିଆଗଛ କିମ୍ବା ପଟ୍ଟନାୟକଙ୍କ ଦୋମହଲା ଘର ଛାତରେ ଧକ୍କା ଖାଇ ସିଧା ଖସିପଡ଼ନ୍ତା ତଳକୁ ।

କିନ୍ତୁ ନା—ଉଡ଼ାଜାହାଜଟା ନା ଧକ୍କା ଖାଇ ଖସିପଡ଼ୁଥିଲା ନା ଗାଁ ଛାଡ଼ି ଉଡ଼ି-ଯାଉଥିଲା ଦର୍‌ବଲ୍ୟୁକୁ—ନଈ ଆରପାରିକୁ କି ଆଉ କୋଉଠିକୁ ।

"ହେ ଭଗବାନ୍, ହେ ନୀଳମାଧବ ଠାକୁରେ, ରକ୍ଷାକର ରକ୍ଷାକର···" ଉକୁନ୍ଦା ଗାଁର ଆବାଳ-ବୃଦ୍ଧ-ବନିତା ଯେତେବେଳକୁ ଯେଝା ଘରୁ, ଯେଝା କୁଡ଼ିଆରୁ ବାହାରି ଆସି ଠୁଳ ହୋଇଗଲେଣି ସେଇ ଗୋଟିଏ ଆଶ୍ରୟସ୍ଥଳ ଗାଁର ଇଷ୍ଟଦେବ ନୀଳମାଧବ ମନ୍ଦିରର ବେଢ଼ା ଭିତରେ, ବେଢ଼ା ଚାରିପଟେ । ଆଉ ଏକ ଲୟରେ ଘାଇଁ ଘାଇଁ ଚକ୍କି ଖାଇ ବିକଟାଳ ଶବ୍ଦ ସହିତ ଗ୍ରାମ ପରିକ୍ରମା କରୁଥିବା ସେଇ ଭୟଙ୍କର ଉଡ଼ନ୍ତା ଦୁର୍ଗଟାକୁ ଅନେଇ ସମସ୍ତେ ଏକାବେଳେକେ ହାଉଳି ଖାଉଥାନ୍ତି, "ଆରେ ବାଜିଲା ତ—ଉ ! ବାଜିଲା ତ—ଉ ! ଏଇ ବାଜିଲା ମିଶ୍ରଘର ଡେଙ୍ଗା ନଡ଼ିଆ ଗଛରେ । ଆରେ ଆରେ— ଖସିଗଲା ତ—ଉ ! ହାଁ ହାଁ ଇଜିଲା ବାଜିଲା ପଟ୍ଟନାଇକଙ୍କ କୋଠା ଛାତରେ ବାଜିଲା ତ—ଉ । ହେ ଭଗବାନ ! ହେ ନୀଳମାଧବ ! —ବାଜିଲା ତ···ଉ ।"

କିନ୍ତୁ, ନାଃ—ଉଡ଼ାଜାହାଜଟା—ଜେଟ୍ ବିମାନଟା—ଗୋଟାଏ ସମ୍ପୂର୍ଣ୍ଣ ବିଦେଶୀ ରଙ୍ଗ, ବିଦେଶୀ ପତାକାର ପଟାପଟା ଛିଟଛିଟିକା ରଙ୍ଗ ଆଉ ଝରକା କାଚ ଭିତରୁ ଗୁଡ଼ାଏ ଗୋରା ଗୋରା ବିଦେଶୀ ମୁହଁଭଳି ଦିଶୁଥିବା ସେସବୁ କି ଅଦ୍ଭୁତ ବିଚିତ୍ର ଯାତ୍ରୀମାନଙ୍କୁ ନିଜ ଗର୍ଭରେ ଧରିଥିବା ଅବସ୍ଥାରେ ବଡ଼ ଅସହାୟ ବଡ଼ ବିଭ୍ରାନ୍ତ ଅବସ୍ଥାରେ ଧଇଁସଇଁ ହୋଇ ଖାଲି ଚକ୍କର ପରେ ଚକ୍କର କାଟି ବୁଲୁଥାଏ ଗାଁ ଚାରିପାଖେ । ନା ଉଡ଼ିପଳାଉଥାଏ, ନା ଖସି ପଡ଼ୁଥାଏ । ସେତେବେଳକୁ ନୀଳମାଧବଙ୍କ ମନ୍ଦିର ବେଢ଼ା ଭିତରେ ଆଉ ବେଢ଼ା ବାହାରେ ହାଉହାଉ ରାଉରାଉ ହେଉଥିବା ମଣିଷଗୁଡ଼ାଙ୍କ ଭିତରେ ଖାଲି ଗୋଟାଏ କୋକୁଆଭୟ ପ୍ରବେଶ କରି ସାରି ନଥାଏ—ପ୍ରଗାଢ଼ ଭୟ ସହିତ ଏକ ପ୍ରକାର ପ୍ରଗାଢ଼ ଉତ୍ତେଜନା ଉଦ୍ରେକ ହୋଇ ଯେପରି ସଚରାଚର ମାନବ ବା ମାନବେତର ପ୍ରାଣୀଜଗତକୁ ସେ ଉତ୍ତେଜନା ହଠାତ୍ ରୂପାନ୍ତରିତ କରିପକାଏ କେଉଁ ଏକ ଆଧିଭୌତିକ ଅବସ୍ଥାକୁ ଏବଂ ଏହି ଅବସ୍ଥାହିଁ ଶେଷରେ ପ୍ରସ୍ତୁତ କରିପକାଏ ମଣିଷର ମନକୁ ବା ପ୍ରାଣୀର ପ୍ରାଣକୁ ଏକ ଚରମ ପରିସମାପ୍ତିର ଶେଷ ସିଦ୍ଧାନ୍ତକୁ ଶେଷରେ ନିର୍ଭୟରେ ଗ୍ରହଣ କରିନେବାକୁ— ଉକୁନ୍ଦା ନାମକ ସେଇ ଛୋଟିଆ ନଈକୂଳିଆ ଗାଁଟିର ସମବେତ ଗ୍ରାମବାସୀମାନେ ଇତି

ମଧ୍ୟରେ ପରସ୍ପରକୁ ସାମୂହିକ ଭାବେ ସେଇ ଶେଷ ସିଦ୍ଧାନ୍ତ ଦଗରେ ଆଗେଇ ନେଇ ଗ୍ଲୁଲଥାନ୍ତି ବେଶ୍ ଦ୍ରୁତ ଗତିରେ ।

"ଦେଖିଲ, ଦେଖିଲ ! କ'ଣ କହୁଥିଲି ମୁଁ ଆଜି ସକାଳେ ! ଓହୋ, ହେ ନୀଳମାଧବ ଠାକୁରେ—ଧର୍ମ ଅଛୁ, ଧର୍ମ ଅଛନ୍ତି ତେବେ ଆମ ଏଇଠି, ଏଇ ଅଞ୍ଚଳରେ··· ଏଇ ଗାଁରେ···ଏଇ ମନ୍ଦିରରେ । ଯାହା କହୁଥିଲି ଫଳିଗଲା···ଫଳିଗଲା ଗୋଟାପଣେ···"

"କିନ୍ତୁ ତମେ ତ ଏକଥା କହି ନଥିଲ—ତମେ କହିଥିଲ ଯଦି ଗ୍ରାମବାସୀମାନେ ଏକାବେଳକେ ସମସ୍ୱରରେ...କିନ୍ତୁ ଏତ ଅଦ୍ଭୁତ ବ୍ୟାପାର । କାହିଁ ଅଇଲା ଏ ଦାନବ—ଉଡ଼ି ଆସିଲା ଗ୍ରାଁକୁ । ଏତ ଅମର ଏବାଟେ ନିତ ଗଲାଆଇଲାବାଲା ଜାହାଜ ନୁହଁ ।"

"ନିତ ହଉ କି ଅନିତ ହଉ, ଅଇଲା ତ । ତମେ ସବୁ କହୁଥେଲ—ହଉ ଗୋଟାଏ ଦୁର୍ଘଟଣା । ପଡ଼ୁ ଗୋଟାଏ ଏଠି ବ୍ୟୋମଜାନ ଶୂନ୍ୟରୁ···କହୁନଥିଲ ?"

"କିନ୍ତୁ ମୁଁ କହିଚ—ଗାଁ ଉପରେ ନପଡ଼ୁ—ପଡ଼ୁ ପଛକେ ଗହୀର ବିଲରେ—କି ନଈବାଲିରେ କି କଲେଜ ପିଲଙ୍କ ଖେଳପଡ଼ିଆରେ ।"

"ସେଇ କଲେଜ ତ ସବୁ ଯାଇଲା—କିଏ କହୁଥେଲା ଏଠି ଏ ପଲ୍ଲୀଗାଁରେ ବଙ୍କାଗଆଙ୍କ ଆଖଡ଼ା ଖୋଲି ଏ ଚାମସା ଭିଆଇବାକୁ ? କି ଦରକାର ଥିଲା ? ଏବେ ପାଅ । ଘୋର ଅଧର୍ମ ବ୍ୟାପିଲାଣି ଏ ସଂସାରରେ ଏ ମୂଲକରେ, ଏବେ ପାଅ । ମର ସମସ୍ତେ । ଏ ଉଡ଼ାଜାହାଜ ନିଶ୍ଚେ ପଡ଼ିବ ତମ ମୁଣ୍ଡ ଉପରେ ଆଉ କ୍ଷଣକେ । ମରିବ ସମସ୍ତେ··· ମରିବ ସମସ୍ତେ । ଏଇ ବାଜିଲା ତ ମିଶ୍ରଘର ନଡ଼ିଆ ଗଛରେ···"

କିନ୍ତୁ ନା । ଭଦେଶୀ ଜେଟ୍ ବିମାନଟାର ପାଇଲଟ୍ ଏତେ ଗରହୁସିଆର ନୁହେଁ ନିଶ୍ଚେ । ମିଶ୍ରଘର ନଡ଼ିଆ ଗଛ ବା ପଟ୍ଟନାୟକଙ୍କ ଦୋମହଲା କୋଠାଠୁଁ ମାଡ଼ କେଇ ଇଞ୍ଚ ଉଚ୍ଚରେ ଉଡ଼ିଯାଉଥିଲେ ମଧ୍ୟ ଉଡ଼ାଜାହାଜର ରୁମଟିଏ ମଧ୍ୟ ସେ ପର୍ଯ୍ୟନ୍ତ ଛୁଉଁ ନ ଥାଏ ତଳର କୌଣସି ପ୍ରତିବନ୍ଧକକୁ । ଯାଉଁକନା ଅଂସୁଥାଏ ଯାଉଁକନା ଉଡ଼ି ବାହାରି ଯାଉଥାଏ ସାମନାର ଯେକୌଣସି ପ୍ରତିବନ୍ଧକର ଉପରେ ଉପରେ । କିନ୍ତୁ ନା ଗାଁ ଛାଡ଼ି ବାହାରି ଯାଉଥାଏ ନା ଧକ୍କା ଖାଇ ଖସି ପଡ଼ୁଥାଏ । ଖାଲି ଘାରି ଘାରି ଚକ୍କର—ସତେ କି ବନ୍ଧନରେ ପଡ଼ିଯାଇଥାଏ । କିଏ ଯେମିତି ଗୁଣିକଣ ବାନ୍ଧିପକେଇଥାଏ, ଛାଡ଼ି ପକେଇଥାଏ ସେ ବିରାଟ ଉଡ଼ନ୍ତା ପାହାଡ଼ ଭଳି ଚଢ଼େଇଟାକୁ ! ଓଃ ବାପରେ, କି ରାବ, କି ଚକ୍କାର । କିନ୍ତୁ ମୁକୁଳି ପାରୁନଥାଏ ।

"ଅଧର୍ମ ବ୍ୟାପିଛି ହିଁ --କିନ୍ତୁ କିଏ କରୁଚ ଏ ଅଧର୍ମ ? ଆମେତ ନୋହୁଁ । ଆମ ଉକୁନ୍ଦାବାଲାଏ ଅଧର୍ମ କ'ଣ ଜାଣନ୍ତି ଭଲା ! ଏ ଗାଁର କଣେ ସଜଣଙ୍କୁ ଛାଡ଼ିଦେଲେ—ସେଇ ମିଶ୍ରଘର ସେଇ ପଟ୍ଟନାୟକ ଘରକୁ ଛାଡ଼ିଦେଲେ—ବାକି ଏଠି ଅଛନ୍ତି କିଏ କହିଲ ଅଧର୍ମ କରିବାକୁ ! କଅଣ ସଜମାନ ପର କ୍ଷେତରେ ହେତା ଲଗି ସସ୍ତାକୁ ଭାଡ଼ ଗଣ୍ଡିଏ

ଖାଇବାକୁ କହନ୍ତି ଅଧର୍ମ ? ସେଇ ଭାଇଗଣ୍ଡିଏ ତ ମିଳୁନ ଏଇଲେ ଲୋକଙ୍କୁ । ଏଥିରେ ଅଧର୍ମ ଆସୁଚ କୋଉଠୁ ? ଆମ ମୁଣ୍ଡ ଉପରେ ଏ ବିପତ୍ତି ପଡ଼ନ୍ତା କାହିଁକି ହେ ବାବୁ ?''

''ଆହେ ଅଧର୍ମ ସମସ୍ତେ କରନ୍ତି ନାହିଁ—କରନ୍ତି ଜଣେ ଅଧେ । ଭୋଗନ୍ତି ସମସ୍ତେ । ଏଇ ହେଲା ଧର୍ମତତ୍ତ୍ୱ । ଯଦି ଏ ଗାଁରେ ଦି'ଜଣ ଅଧର୍ମ କଲେ ସାରା ଗାଁବାଲା ତାକୁ ନମୁଣ୍ଡେଇବେ ବୋଲି ଭାବିଚ ? କାହିଁକି ! ଏଇ ଦେଖିଲ, ଦେଖିଲ—ଶଳା ପାଇଲଟ୍‌ଟା ମଦ ଖାଇଚ ନା କଅଣ । ଆରେ ଆରେ—ଏ ତ ପୁରା ଯେମିତି ଢଆଁସ ହେଲାଣି ଓହ୍ଲେଇ ପଡ଼ିବ ବୋଲି ସିଧା ବାଉଁଶ ସାଇ, ମାନେ ହରିଜନ ସାଇ କୁଡ଼ିଆ ଗୁଡ଼ାକର ମୁଣ୍ଡ ଉପରେ କି କଅଣ ! ଗଲା ଗଲା ଗଲା—ଏଇଲେ ତ ଭାସୁକନା ଜଁଆଁ ଉଠିବ ସେଠୁ । ଜଳିଯିବ, ପୋଡ଼ିଯିବ···ଗଲା, ଗଲା, ଗଲା ତ ସେ ସାଇଟା ନା କଅଣ !''

କିନ୍ତୁ ନା, ଜେଟ୍ ବିମାନ ଇତିମଧ୍ୟରେ ସତକୁ ସତ ତଳକୁ ଝାମ୍ପ ମାରିଲାଭଳି ଥରେ ଖସିଆସିଥିଲେ ମଧ୍ୟ ପୁଣି ଉଠିଗଲା ଉପରକୁ । ସମ୍ଭବତଃ ଯେଉଁ ସ୍ଥାନଟାକୁ ଲକ୍ଷ୍ୟ କରି ଓହ୍ଲାଇ ପଡ଼ିବ ବୋଲି ଭାବି ନେଇଥିଲା—ସେଟା ଅଜାଡ଼ୁଆ ଦେଖି ପୁଣି ଉଠିଗଲା ଉପରକୁ । ଏଇ ଅବସରରେ ଗୋଟାଏ ଭୀଷଣ କୋଳାହଳ ଶୁଣାଗଲା ମଧିର ବେଢ଼ା ବାହାରୁ, ଆଉ ସାଙ୍ଗେ ସାଙ୍ଗେ ପଞ୍ଚାଏ ଲୋକ ଧାଇଁଯାଇଥିଲେ ହରିଜନ ସାଇଆଡ଼େ । କିନ୍ତୁ ଉଡ଼ାଜାହାଜଟା ଗୁଡ଼ିଭଳି ଗୋଟାଏ ଗୋଡ଼୍ ଖାଇ ଉପରକୁ ଉଠିଯିବାକ୍ଷଣି ଅଟକିଗଲେ ସେ ପଂକ୍ତାକ ।

''ଗଲା ଯାଃ—ଭାବିଥିଲୁ ପଡ଼ିଗଲା ନିଶ୍ଚେ !''

''କିନ୍ତୁ ଗଲା କୁଆଡ଼େ ? ହେଇତ ଲେଉଟିଲା—ଓହୋ, କି ଗର୍ଜନ ଲୋ ବୋଉ !''

''ତାକୁ କିଏ ବାନ୍ଧି ଦେଇଚ ନିଶ୍ଚେ ! ମନ୍ତ୍ର କରିଚ । ନ ହେଲେ ଦେଖୁନ ପୁଣି କେମିତି ଘୂରିଲାଣି ଶାଗୁଣା ପ୍ରାୟେ ।''

''କେହି ବାନ୍ଧି ନାହାନ୍ତି—ବାନ୍ଧିଥିଲେ ବାନ୍ଧିଥିବେ ନୀଳମାଧବ ଠାକୁର । ହିମାଳୟର ମହାତ୍ମା କହିଚନ୍ତି ପରା—ଏ ଏକ ଅଦ୍ଭୁତ ଠାକୁର । ସାରା ଜଗତରେ ନାହାନ୍ତି ଏମିତି ଠାକୁର । ନହେଲେ ହିମାଳୟରୁ ମହାତ୍ମାମାନେ କାହିଁକି ଆସନ୍ତି ଏଠିକି କହୁନ ?''

''ସେ ଯାହା ପାରେ ତା ହଉ—ଯଦି ଏ କନ୍ଟୁ ଏଠି ପଡ଼େ ହଜାରେ ମୁଣ୍ଡ ଖାଇବ ନିଶ୍ଚେ । ନୀଳମାଧବ କ'ଣ ଘୁଞ୍ଚିଁଚନ୍ତି ଏଇଆ ? ଆମେ ମରିବା—ଆମ ମୁଣ୍ଡ ଉପରେ ଉଡ଼ାଜାହାଜ ପଡ଼ିବ ?''

''ସେ କଅଣ ଘୁଞ୍ଚିଁଚନ୍ତି ତମେ କଅଣ ଜାଣ—ସେ ଯଦି ଘୁଞ୍ଚିଁଥାନ୍ତି ଏଠି ଗୋଟାଏ ଉଡ଼ାଜାହଜ ପଡ଼ୁ—ଧନରତ୍ନ ହୀରାନୀଳା ସ୍ୱର୍ଗରୁ ଖସିପଡ଼ୁ—ଉକୁଣ୍ଡା ଗାଁର ଦରିଦ୍ର ଲୋକଙ୍କୁ ସେ ଧନ ସରିସତ ହଉ—ଦାରିଦ୍ର୍ୟ ଘୁଞ୍ଚୁ—ଗରିବ ହଟୁ···''

"କାହିଁକି ନସ୍ତୁଛୁଁ ଥିବେ ସେଇଆ ? ପାଞ୍ଚବରଷ ହେଲାଣି—କବାଣୀ ଗୃହକସ୍ତିଟିଏ କରି ଯିବା ଏଠୁ କାହିଁ ପଚଶ ମାଇଲ ଦୂର ସହରରେ । କି ମହାର୍ଗ ଜାଗା । କଅଣ ଖାଏ କଣ ପିଏ । ସୋମବାର ସକାଳୁ ଯାଏ ସେ ଅସୁଅସୁ ଶନିବାର ରାତି ଅଧ । ଆମ କଥା କିଏ ବୁଝେ ? ଖଣ୍ଡିଏ ଟ୍ରାଞ୍ଜିଷ୍ଟର ରେଡ଼ିଓ ପଚ୍ଚ କରିପାରିଲାନାହିଁ କୋଲି ଆମ ଘରେ କି କେଲେଙ୍କେରି କରୁଥିଲି ତୁମକୁ ଆଜି ବଡ଼ ସକାଳେ । ନୀଳମାଧବ ଏବେ ମୋ ଗୁହାରି ଶୁଣି ଏ ବ୍ୟବସ୍ଥା ନ କରୁଚନ୍ତି ବୋଲି କହିବା କେମିତି ? ମୋର ତ ମନେହେଉଛି···"

ହଠାତ୍ ଏକ ପ୍ରଳୟଙ୍କରୀ ଶବ୍ଦ ସହିତ କି ଭୀଷଣ ଅଭୁ ଏକ ପ୍ରକାର ରାବରେ ସମଗ୍ର ଅଞ୍ଚଳଟି ଥରିଉଠିଲା ଓ ପ୍ରାୟ ହେବପରି ହଠାତ୍ ଚତୁର୍ଦ୍ଦିଗ ନିସ୍ତବ୍ଧ ହୋଇଗଲେ ମଧ୍ୟ ।

"ଆରେ ପଡ଼ିଗଲେ ପଡ଼ିଗଲେ ! କଲେଜ ଖେଳପଡ଼ିଆରେ ପଡ଼ିଗଲେ···ପଡ଼ିଗଲେ···"

ଆଉ ମୁହୂର୍ତ୍ତିକ ଭିତରେ ଶହ ଶହ ଲୋକ ଉଲୁନ୍ଦା ନାମଧାରୀ ସେଇ ନଈକୂଳିଆ ପଲ୍ଲୀଗ୍ରାମଟିର ଆବାଳବୃଦ୍ଧବନିତା—ଗାଁର ଇଷ୍ଟଦେବତା ନୀଳମାଧବ ମନ୍ଦିର ପ୍ରାଙ୍ଗଣ ପରିତ୍ୟାଗ କରି ଧାଇଁବାକୁ ଆରମ୍ଭ କଲେ ସେଇ ଗୋଟିଏ ଦିଗରେ—ରାମଜୀଲା ତୋଟା ପାଖ ଗ୍ରେଟ ଖୋଲାଜାଗା ବା କଲେଜ ପଡ଼ିଆରେ ଖସିପଡ଼ି ହୁତ୍ ହୁତ୍ ହେଇ ଜଳି ଯାଉଥିବା ସେଇ ବିସ୍ମୟକର ବସ୍ତୁର ପାହାଡ଼ଟା ଆଡ଼କୁ ।

କିନ୍ତୁ ଘଟଣାସ୍ଥଳରେ ଉପନୀତ ହେବାର ଢେର୍ ପୂର୍ବରୁ ଜଣେ କିଏ ଚିତ୍କାର କରି ଉଠିଲା—

"ଆରେ ହେ । ଗୋଟାଏ ଟ୍ରାଞ୍ଜିଷ୍ଟରଟାଏ ନା କଣଟାଏ ମ ।" ଅଟକିଗଲା ଓ ପ୍ରକୃତରେ ସେଇ ବର୍ଣ୍ଣନାତ୍ମକ ଚିତ୍କାର ଅନୁଯାୟୀ ମୁକ୍ତ କୃଷିକ୍ଷେତ ଉପରେ ପଡ଼ିଯାଇଥିବା ପଦାର୍ଥ ଉପରେ ଅଜାଡ଼ି ହୋଇପଡ଼ିଲା ।

ଏହାର କିଛି ସମୟ ପରେ ଅଦୂରରୁ ଆଉ ଏକ ଉତ୍ସାହଜନକ ଆହ୍ୱାନ ଶୁଣାଗଲା— "ଆରେ କାଙ୍ଗାଳଗୁଡ଼ାକ—ସେଇଠି କାହିଁକି ଧରାପରା ହଉଚ ଭଲା । ହେଇ ଦେଖନ । ତୋଟା ଭିତରଯାକ···ମୋ ବାପଲେ । ଏତ ପୂରାପୂରି ଆମେରିକାନ କିନାଷ— ଖାଣ୍ଟି ଆମେରିକାନ୍—ଅର୍ଥ ନୂଆ ରେଡ଼ିଓ । ଟେପ୍‌ରେକର୍ଡର । କ୍ୟାମେରା । ଭ୍ୟାନିଟି ବ୍ୟାଗ । ଶାଢ଼ୀ, ଘଡ଼ି, ଆଉ ମୋ ବାପଲେ ସୁନା ନା କଅଣ ସେଗୁଡ଼ାକ !"

ଅଧାବାଟରେ, ମୁକ୍ତ କୃଷିକ୍ଷେତରେ ପଡ଼ିଯାଇଥିବା ଗୋଟାଏ ଚୁନ୍‌ଭୁତ୍ ଟ୍ରାଞ୍ଜିଷ୍ଟର ରେଡ଼ିଓକୁ ନେଇ ଧରାପରା ହେଉଥିବା ଜନତା ଏଥର ଉଠିପଡ଼ି ଧାଇଁବାକୁ ଲାଗିଲେ ରାମଜୀଲା ତୋଟା ଭିତରକୁ । ଖରାଦିନ, ତୋଟାର ଆମ୍ବ ପାଚିବା ବେଳ ହେବାର ଯଥେଷ୍ଟ ପୂର୍ବରୁ ଅଧାଡ଼ୁଆ କୋଇଲିପାରେଡ଼ା କି ସତ ସନ୍ତ ଅବେଳରେ ପାଚି ଝଡ଼ି ଯାଇଥିବା ଆମ୍ବକୁ ନେଇ ଗାଈଜଗୁଆଳ ପିଲାମାନେ ଯେପରି ଧରାପରା ହୁଅନ୍ତି, ଉଲୁନ୍ଦା

ଗାଁ ଓ ଆଖାପାଖର ଅଧିବାସୀମାନେ ସେଦିନ ଦ୍ୱିପହର ଟୋକାକଥାକ ଯେମିତି ଧସ୍ତପସ୍ତ ହଉଥାନ୍ତି ସମସ୍ତିଲା ଟୋକା ଭିତରେ ।

ଅଦୂରରେ, ଟୋକା କଡ଼କୁ ଲାଗି ଗୋଟିଏ ଶ୍ରେଷ୍ଠ ଅପ୍ରଶସ୍ତ ଝୋଲ ପଡ଼ିଆ ବା କଲେଜ ପଡ଼ିଆ ପାଢ଼କୁ, ଅଣ୍ଟା ତଳକୁ ଆଉ ଲଞ୍ଜ ଉପରକୁ କରି ମୁହଁମାଡ଼ି ପଡ଼ିଯାଇଥିବା ବିରାଟକାୟ ଜେଟ୍ ବିମାନଟା ସେଦିନ ଦ୍ୱିପହରେ ମାତ୍ର କେଇଘଣ୍ଟା ଭିତରେ ପୋଡ଼ି ପାଉଁଶ ହୋଇଯାଉଥାଏ । ବିମାନରେ ଥିବା ସମସ୍ତ ପାସେଞ୍ଜର ଏକ ସମୂହ ଚିତାଗ୍ନିରେ ଜଳିଯାଇ ସାରିଥାନ୍ତି ବହୁତବେଳୁ । ଜଳନ୍ତା ବିମାନର ଚତୁଃପାର୍ଶ୍ୱରେ ଠାଏ ଠାଏ କଅଣ ସେଗୁଡ଼ାକ ପଡ଼ିଥାଏ କେଜାଣି—ସେଥିମଧ୍ୟରୁ ଗୋଟିଏ ଜିନିଷ ଦିଶୁଥାଏ ଅତି ଭୟଙ୍କର; ତଥାପି ଅତି ଆକର୍ଷଣୀୟ ମଧ୍ୟ । ଭୟଙ୍କର ଜିନିଷଟା ଗୋଟିଏ ଦରପୋଡ଼ା ମଣିଷର ଅବଶିଷ୍ଟାଂଶ ନିଶ୍ଚୟ । କିନ୍ତୁ ଆକର୍ଷଣୀୟ ବସ୍ତୁଟା ଥିଲା ସେଇ ମଣିଷର ଗୋଟାଏ ହାତ । ସମ୍ଭବତଃ ସେଇ ହାତରେ ତଥାପି ଧୃତ ହୋଇଥିବା ପଦାର୍ଥଟିକୁ ଲକ୍ଷ୍ୟ କରି କେନୈକ ଗ୍ରାମବାସୀ ଟୋକା ଭିତରୁ ସବୁରି ଅଲକ୍ଷ୍ୟରେ ପ୍ରକୃତ ଘଟଣାସ୍ଥଳକୁ ଧାଇଁ ଆସିବାମାତ୍ରେ ତା ପାଟି ଆପେ ଖୋଲିଗଲା—

"ବ···ବ · ବନ୍ଧୁକ ଲୋ ବୋଉ !"

ଇତିମଧ୍ୟରେ ଟୋକା ଭିତରୁ ଅଣ୍ଡି, କାନ, ମୁଣ୍ଡି, ଝୋକେଇରେ ସ୍ୱର୍ଗରୁ ବର୍ଷି ଯାଇଥିବା ଅସଂଖ୍ୟ ବିଦେଶୀ ସମ୍ପତ୍ତି ସଂଗ୍ରହ କରିସାରିଥିବା ଜନତା ଟୋକାରୁ ବାହାରି ପଡ଼ିଥିଲେ ଏବଂ ପ୍ରକୃତ ଘଟଣାସ୍ଥଳରେ ଘଟିଯାଇଥିବା ମହାଭୟଙ୍କର କରୁଣ ଦୃଶ୍ୟଟିକୁ ସ୍ୱଚକ୍ଷୁରେ ଦେଖିଦେଇ ମୂକ ପାଲଟିଲେ ଭଳି ସ୍ତବ୍ଧ ହୋଇ ରହିଯାଇଥିଲେ । ସେତିକବେଳେ ପୁଣି ଥରେ ଶୁଣାଗଲା—

"ହାଇଜାକ୍···ଏ ନଷ୍ଟେ ହାଇଜାକ୍···ଏଇ ଦେଖ ବନ୍ଧୁକ···ଏଇ ଲୋକର କାମ ଏ···ଏଇ ସେଇ ହାଇଜାକର୍···ଏଇ···ଏଇ···

କେହି ବୁଝିପାରିଲେ ନାହିଁ ।

ବୁଝିବା ଅବସ୍ଥାରେ ନ ଥିଲେ କେହି ।

ଦନକ ପରେ ବୁଝାପଡ଼ିଲା ସବୁ ।

ପୁଲିସ୍ ଆସିଲା ।

ଗାଁର ଅନ୍ଦକନ୍ଦି ଧୂଳାଳି ଯାବତ୍ ବିଦେଶୀ ଜିନିଷ ଜବତ କରାଯାଉଥିଲାବେଳେ ପ୍ରକୃତ ବିଷୟ ବୁଝାଇଦେଲେ ସେମାନେ—

"ଯୋଉ ଲୋକ ବନ୍ଧୁକ ଧରି ପୋଡ଼ିମଲା ସେଇ ଏ କାଣ୍ଡର ମୂଳ । ଜାହାଜରେ ଚାଳିଶ ଲୋକ ଥିଲେ । ଏ ପାଗଳା ହଠାତ୍ ପାଇଲଟ୍ ବେକମୂଳେ ପିସ୍ତଲଟାକୁ ଚାପି ବାରମ୍ବାର ରଡ଼ି ପକେଇଲା—'ଗୁଲ୍ ସେଇଠିକି ଯୋଉଠି ଭଗବାନ ଅଛନ୍ତି' । ପାଇଲଟ୍

ବୁଝିବାକୁ ନପାରି ଇଣ୍ଡିଆକୁ ଉଡ଼ିଆସିଲି । ଇଣ୍ଡିଆ, ମାନେ ଆମ ଦେଶରେ ଭଗବାନ କୋଉଠି ବିଚରି ପାଇଲଟ୍ ଖବ ପାରିଲିନାହିଁ । ହଠାତ୍ ଉଡ଼ୁ ଉଡ଼ୁ ହାଇଜାକର୍ କହିଲା—'ଓହ୍ଲା ! ଓହ୍ଲା ଏଇଠି ।' ପାଇଲଟ୍ ବହୁତ ଚେଷ୍ଟା କଲା—କିନ୍ତୁ ହେଲା ନାହିଁ । ତମ ଗାଁ ଠାକୁର ନୀଳମାଧବ ପ୍ରତ୍ୟକ୍ଷ ଠାକୁର ନିଶ୍ଚେ । ତମ ଗାଁବାଲାଙ୍କ ଉପରେ ରେଡ଼ିଓ, ଟେପ୍-ରେକର୍ଡ଼ର, ସୁନା ରୁପା ଅଜାଡ଼ି ଦେଲେ । କିନ୍ତୁ ବିଧର୍ମୀକୁ ଧର୍ମକ୍ଷେତ୍ର ଜାଅନ୍ତାରେ ଛୁଆଁଇ ଦେଲେନାହିଁ । ହଁ, ବାହାରକର ଏଥର ଆଉ କୋଉଠି କଅଣ କଏ ପୂରେଇଚ । ବାହାର କରିବ ନା ଦେଖିବ ଏଇନେ...

ବନ୍ଧୁକଧାରୀ ପୁଲିସ୍ ଠାକୁର ନୀଳମାଧବଙ୍କ ସମେତ ସାରା ଗାଁଟାକୁ କବ୍‌ଜା କରି ରଖିଥାନ୍ତି ତଥାପି ।

# ମୂଲ୍ୟବାନ୍ ଧନ

ସେଗୁଡ଼ିକ ଥିଲା ମୋ ଜୀବନର ଅତ୍ୟନ୍ତ ମୂଲ୍ୟବାନ୍ ଧନ । ହଳରେ ଯୋଚ୍ଚି ହୋଇଥିବା ବଳଦକୁ ମାଲିକ ବାରମ୍ବାର ପିଟିବା ପରି ପିଟୁଥିଲେ ମତେ ସେମାନେ । ମୋ ନାଙ୍ଗୁଡ଼ିକୁ ମୋଡ଼ିଦେଉଥିଲେ ଆଉ ମଝିରେ ମଝିରେ ପାଞ୍ଚଣ ଭିତ୍ତି ମଧ୍ୟ କଷି କଷି ମାରୁଥିଲେ ସେତିକିବେଳେ ଖଙ୍କା ପେଟର ନରମା ଜାଗାରେ । ଆଉ ପ୍ରତିଥର ଅନ୍ତରୁଜୁଳା ଭିତରୁ 'ଅଙ୍କ୍' କିନା ଶବ୍ଦଟାଏ ବାହାରି ମୋ ଗ୍ରୁତବାଟେ ପଶି କଣ୍ଠସ୍ୱରରେ ଏକ ଅଭିଶାପରେ ପରିଣତ ହେବା ପୂର୍ବରୁ ମୋ ସ୍ତ୍ରୀ ସେ ଅଭିଶାପକୁ ଖଣ୍ଡନ କରିବା ଉଦ୍ଦେଶ୍ୟରେ ଠାକୁରଙ୍କ ଘରକୁ ପଶିଯାଉଥିଲେ ଓ ତାଙ୍କର ଇଷ୍ଟଦେବ-ଦେବୀମାନଙ୍କୁ ଶୁଣେଇ ଶୁଣେଇ ପ୍ରାର୍ଥନା କରୁଥିଲେ—

"ନା ପ୍ରଭୁ, ନା ! ତାଙ୍କ ଗୁଣ୍ଡ ସୁଗୁଣ୍ଡ ନହେଉ । ଅମୁକ ବାବୁଙ୍କର କିଛି କ୍ଷତି ନହଉ । ତାଙ୍କ ଆଗ ଗୋଡ଼ରେ କଣ୍ଟା ନବାଜୁ । ତାଙ୍କ ସ୍ତ୍ରୀଙ୍କର କାଚ ବଳା ହଉ । ତାଙ୍କ ପିଲେ ଦୀର୍ଘଜୀବୀ ହୁଅନ୍ତୁ । ସୁଖରେ ରହନ୍ତୁ ।"

"ତେବେ ମୋ ସ୍ତ୍ରୀ ହାତରୁ କାଚ ଝଡ଼ିପଡ଼ୁ—ମୋ ପିଲେ ଅଲ୍ପାୟୁଷ ହୁଅନ୍ତୁ—ଆମର ସୁଖ..." ମୁଁ ରାଗିଯାଏ । ହାତ ପାହାନ୍ତରେ କାଚଗ୍ଲାସ୍, କପ୍, ପ୍ଲେଟ୍ ଯାହା ମିଳେ ସେଗୁଡ଼ାକ ମନଇଚ୍ଛା ଫୋପାଡ଼େ, ଭାଙ୍ଗେ । ପ୍ରଚଣ୍ଡ କ୍ରୋଧରେ ନିଜ ଗ୍ରୁତକୁ ଗାଉଁ ଗାଉଁ ବିଧାମାରେ ।

ସ୍ତ୍ରୀ ଠାକୁରଘରୁ ଧାଇଁ ଆସନ୍ତି । ମୋ ହାତ ଧରି ପକାନ୍ତି । ମୋତେ କୁଣ୍ଢେଇ ଧରନ୍ତି । ଥରେ ଥରେ ମୋ ହାତର ବିଧାମାଡ଼ ପଡ଼େ ମଧ୍ୟ ତାଙ୍କ ଉପରେ ।

କିନ୍ତୁ ଆହା ମୋ ଭାରତୀୟ ନାରୀ ! ବିଚାରୀ କେଡ଼େ ଧୈର୍ଯ୍ୟବତୀ, କେଡ଼େ ସହନଶୀଳା ସତରେ । ମୋ ପରି ହଳୁଆ ବଳଦର ବିଧା ନାତକୁ ଧନ ପରେ ଧନ, ରାତି ପରେ ରାତି ପଛେ ସମ୍ଭାଳି ନେବ ସେ—କିନ୍ତୁ ମୋ ମାର୍କିଷ୍ଟ୍ ତତ୍ତ୍ୱରେ ଆଦୌ ରାଜି ହେବ ନାହିଁ ସେ ।

"ତମ ଠାକୁରଙ୍କୁ ଧିକ୍ !" ରଡ଼ି କରି ଘର ଗ୍ରୁତ ଫଟେଇ ଦିଏ ମୁଁ, "ସେ ବୁର୍ଜୁଆ ନାଇଣ୍ଟିନ୍‌ଥ ସେଞ୍ଚୁରି କଲୋନିଆଲିଷ୍ଟ୍ ଗୋଲାମମାନଙ୍କର ଯୁଗ ଏ ଯାଏ ଖତମ ହୋଇନାହିଁ ସ୍ୱାଧୀନ ଭାରତରେ, ଶାନ୍ତ !" ମୁଁ ଚିତ୍କାର କରେ ।

ମୋ ସ୍ତ୍ରୀ ଶାନ୍ତ—ଶାନ୍ତିର ପ୍ରତିମୂର୍ତ୍ତି, ସାକ୍ଷାତ୍ ଦେବୀଟିଏ ନିଶ୍ଚୟ ! କିନ୍ତୁ ବିଗୁଣି କିଛି ବୁଝିପାରେ ନାହିଁ ମୋର ସେ ଚକ୍ରାନ୍ତକୁ । ବିଂଶ ଶତାବ୍ଦୀର ପଞ୍ଚମ ଦଶକରେ ଭାରତର ସ୍କୁଲ୍ କଲେଜ୍‌ଗୁଡ଼ିକରେ ଯେଉଁ କାମଚଳା ଶିକ୍ଷାର ପିଲାବସ୍ତୁଗୁଡ଼ିକ ପ୍ରଚଳିତ ଥିଲ ତାର ପ୍ରୋଡକ୍ଟ ସେ । ବିଗୁଣି ନା ବୁଝିଛି ଗାନ୍ଧୀ, ନା ଧର୍ମ, ନା ବିଜ୍ଞାନ, ନା କିଛି । ପୃଥିବୀ ଉପରେ ଦୁଇଦୁଇଟା ବିଶ୍ୱଯୁଦ୍ଧ ଘୂର୍ଣ୍ଣିବାତ୍ୟା ଭଳି ବୋହିଯାଇଥିଲେ ମଧ୍ୟ ଧାର୍ମିକ ଭାରତୀୟ ନାରୀର ହୃଦୟ କାର୍ଯ୍ୟତଃ, 'ସଂସାର ଇବ ଗଭୀର ମାୟା ! ହେ ମାଧବ, ତୁମସି ସମ୍ପ୍ରତି କର୍ଣ୍ଣଧାର' ସ୍ତରରେ ଖଣ୍ଡିଏ ଏ ଭଙ୍ଗା ଦଦରା ନୌକା ଗଭୀର ନଦୀରେ ତଥାପି ଭାସୁଥିବା ପରି ଭାସମାନ । ମାଧବ ଅର୍ଥାତ୍ ଶାନ୍ତିର ଠାକୁରମାନେ ଏ ଦେଶଟାକୁ ତଥାପି ଚଳାଉଥାନ୍ତି, ତଥାପି ଶାନ୍ତିର ହୃଦୟ ନୌକାର କର୍ଣ୍ଣଧାର ହୋଇ ଠିଆ ହୋଇଥାନ୍ତି ସେମାନେ—ସନ୍ଦେହ ନଥାଏ କିଛି ସେ ତତ୍ତ୍ୱରେ ମୋର ।

ସେତେବେଳକୁ ପ୍ରାୟ ଛ' ମାସ ହେବ ମୁଁ ମୋ ଗୁରୁଙ୍କଠାରୁ ଛୁଟିନେଇ ବୁଲୁଛି ସହର ରାସ୍ତାରେ । ଦରମା ନାହିଁ । ସାମାନ୍ୟ ସଞ୍ଚୟ ଥାଏ ଜି. ପି ଏଫ୍.ରେ । ସେଇ ସଞ୍ଚୟ ଗଣ୍ଡାକ ମାତ୍ର ସମ୍ବଳ ସେତେବେଳେ ମୋର । ଦିନଗୁଡ଼ାକ ବିତି ଯାଉଥାଏ ସେକ୍ରେଟେରିଏଟ୍ ଧାଁଧପଡ଼ରେ । ନୂଆ ସରକାର । ନୂଆ ମନ୍ତ୍ରୀ । ଦିନମାନ ସେଇ ମନ୍ତ୍ରୀଙ୍କ ଅନୁସରଣରେ । ରାତିମାନ—ଆତ୍ମ କଥୋପକଥନରେ । ସେଇ ଗୋଟିଏ ପ୍ରଶ୍ନ—ଦୋଷ କ'ଣ ? ସେଇ ଗୋଟିଏ ଉତ୍ତର—ମାଧବ ଅସନ୍ତୁଷ୍ଟ !

ଯେନେ ଯେନେ ରାତି ଅଧରେ ମୁଁ କାନଫଟା ଚିତ୍କାର କରି ଉଠୁଥିଲି, "ୟୁ ବ୍ଲଡ଼ି ମାଧବ ! ଦି ଗଡ୍‌ସ୍ ଅଫ୍ ଦି ବ୍ୟୁରୋକ୍ରାଟ୍‌ସ୍ !"

ଶେଯରୁ ଡେଇଁପଡ଼ି ଧାଇଁ ଆସୁଥିଲି ଶାନ୍ତିର ଠାକୁର ଘର ପର୍ଯ୍ୟନ୍ତ । କିନ୍ତୁ ସେଇଠାରେଇ ଅଟକି ଯାଉଥିଲି ମୁଁ—ସେଇ ଠାକୁରଘରର ଦୁଆରବନ୍ଧ ନିକଟରେ । କାରଣ କୌଣସି ଅଜ୍ଞାତ ଭୟ ଅଥବା ଆଉ କିଛି ହଠାତ୍ ଗ୍ରାସ କରି ନେଉଥିଲା ମତେ ମୋର ଅଜାଣତରେ । ଶାନ୍ତିର ଠାକୁରମାନଙ୍କୁ ଅବଶ୍ୟ ଆଦୌ ଭୟ କରେନାହିଁ ମୁଁ କସ୍ମିନ୍‌କାଳେ । ମୋର ଏକମାତ୍ର ଭୟ ଶାନ୍ତିକୁ । ତାର ଧର୍ମ, ଧାର୍ମିକତା, ଯୁଗଯୁଗର ପାରମ୍ପରିକ ବିଶ୍ୱାସ ଓ ଭୟକୁ ଗୋଟାଏ ମୁହୂର୍ତ୍ତରେ ଉତ୍ତେଜନାରେ ଟୋକେଇରେ ପୂରେଇ ନଳାରେ ଫୋପାଡ଼ି ଦେଇ ଆସିବାକୁ ମତେ ଯେତେ ଡର ଲାଗେନାହିଁ—ତାଠୁଁ ବେଶି ଡରଲାଗେ ଶାନ୍ତିକୁ । ଚିନ୍ତାରେ ପଡ଼ିଯାଏ ମୁଁ । 'ଯଦି ଏଥିଲାଗି ଶାନ୍ତିକୁ ହରାଇବାକୁ ପଡ଼ିବ ମତେ ?' ପଛରେ ମୁଁ ନିଜକୁ । ମୋ ପାଦ ଠାକିଯାଏ । ହାତ ମୁଠା ମୁଠା ହେଇଯାଏ । ଠାକୁର ଘରର ଇଲେକ୍ଟ୍ରିକ୍ ସୁଇଚ୍‌ଟାକୁ ଟିପି ଅସହ୍ୟ ଅନ୍ଧାରକୁ ତଡ଼ିଦେଇ ଆଲୋକିତ କରିଦିଏ ମୁଁ ଘରଟାକୁ । ଇଲେକ୍ଟ୍ରିକ୍ ଆଲୁଅରେ ଠାକୁରଘରଟା ମୁହୂର୍ତ୍ତିକେ ଉଦ୍ଭାସିତ ହୋଇଉଠେ । ଶାନ୍ତିର ସଭକ୍ତିରକ୍ଷିତ ଠାକୁରମାନଙ୍କର କାଚ

ବନ୍ଧେଇ ଫଟୋଗୁଡ଼ିକ ଚକ୍‌ଚକ୍ କରଉଠେ । ସେଇ ଚକ୍‌ଚକ୍ ଭିତରୁ ଶାନ୍ତର ମାଧବମାନେ ମୁରୁକେଇ ମୁରୁକେଇ ହସିବାକୁ ଆରମ୍ଭ କରନ୍ତି ସେତେବେଳେ । ତା ସହିତ ଗୋଟାଏ ଧଇଁଟା ବାଲିଧୂଆଳୁ ରଙ୍ଗର ଚୂଡ଼ିଆ ମୂଷା ମଧ୍ୟ ଝପ୍‌ଝାପ୍ ଡିଆଁମାରି ପଳାନ୍ତି ମୋ ଗୋଡ଼ପାଖରେ । ସେମାନଙ୍କର ପଳାୟନ ଢଙ୍ଗ ଆଖିରେ ପଡ଼ିବାମାତ୍ରେ ମୋ ଅନ୍ତରର କ୍ରୋଧ ଅବଶ୍ୟ ତତ୍‌କ୍ଷଣାତ୍ ବହିର୍ମୁଖୀ ହୋଇଯାଏ । ମୁଁ ହସିଦିଏ । ଶାନ୍ତର ଠାକୁରମାନଙ୍କର ହସକୁ ଭ୍ରୂକ୍ଷେପ ନ କରି ମୁଁ ଅବଶ୍ୟ ମାତିଯାଏ ମୋ ନିଜ ହସରେ । ଏହି ଅବସରରେ ଦେଖେ—ମୋ ହସରେ ଚମକି ଉଠି ବସିଥିବା ଶାନ୍ତି ଅସି ହାଜର ମୋ ସମ୍ମୁଖରେ ।

"ତମେ ପୁଣି ସେମାନଙ୍କର ଅନିଷ୍ଟ ଚିନ୍ତା କରୁଚ ! ଏ ରାତିଅଧରେ ?" ମୋ ହାତକୁ ଆସ୍ତେ କବଳିତ କରିନେଇ ସାରି ପଚାରେ ସେ ତାର ସେଇ ଅବୋଧ ରହସ୍ୟମୟ ଢଙ୍ଗରେ ।

"ଆଇ ସାଲ୍ ତେଞ୍ଚୁସ୍ ଦେମ୍ ! ଅନ୍‌ହ୍ୱଲେଟ୍ ଦେମ୍..." ଶାନ୍ତି ହାତରୁ ମୋ ହାତଟାକୁ ଛଡ଼ାଇ ଦେବାପାଇଁ ଚେଷ୍ଟା କରେ ମୁଁ । କିନ୍ତୁ ପାରେନା । ମୋ ଶରୀର ଓ ମନର ଅସମ୍ଭବ ଶକ୍ତି ଓ ସଙ୍କଳ୍ପ ହଠାତ୍ କ୍ଷୀଣ ହୋଇଆସେ । ଶାନ୍ତର ଦୁର୍ବଳ ଶରୀରଟାକୁ ଏକମାତ୍ର ଆଶ୍ରୟସ୍ଥଳ ମନେକରି ମୁଁ ତାକୁ କୁଣ୍ଢେଇ ଧରେ । କହିଯାଏ ତା ଗ୍ରୀବାରେ—ଷୀଂଖିଆ ଗ୍ଲେଟ ପିଲ୍‌ଟିଏ ପରି । ଶାନ୍ତି ମୋ ମୁଣ୍ଡବାଳକୁ ଆଉଁସିଦିଏ । ଗ୍ଲେଟ ଷୀଂଖିଆ ପିଲଙ୍କୁ ଖେଳ କଲାପରି ମୋତେ ଖେଳ କରେ । ଗ୍ଲେଟ ପିଲଙ୍କୁ ପହିଲ ପହିଲ ଶବ୍ଦ ଶିଖେଇଲାଭଳି ମତେ ଶିଖାଏ—"କାହାର ଅନିଷ୍ଟ ଚିନ୍ତା କରିବା ଆମର ଉଚିତ ନୁହେଁ ! ଧୈର୍ଯ୍ୟଧର ! ସହ୍ୟ କର ! ଭଗବାନ ଅଛନ୍ତି ! ନିଶ୍ଚେ ଅଛନ୍ତି ! ସେଇ ବୁଝିବେ..."

ଶାନ୍ତି ମୁହଁରୁ ଭଗବାନ ଶବ୍ଦ ଶୁଣିବାମାତ୍ରେ ମୋ ଦେହରେ ପୁଣିଥରେ ଶକ୍ତି ସଞ୍ଚାର ଯାଏ । ତାର ହାଡ଼ୁଆ ଗ୍ରୀବାରୁ ମୁହଁ ଟେକି ମୁଁ ପୁଣି ଚାହେଁ ତାର ସେଇ ମୂଷିକ ବନ୍ଦୀକୃତ ଠାକୁରଗୁଡ଼ାଙ୍କ ମୁହଁକୁ । ସେମାନଙ୍କ ହସ ସେତେବେଳକୁ ଆଉ ପ୍ରକାରେ ଦିଶିବାକୁ ଆରମ୍ଭ କରିଥାଏ ।

"ତା ମାନେ କାଲି ସକାଳେ ମତେ ପୁଣି ଯିବାକୁ ପଡ଼ିବ ସେଇ ସେକ୍ରେଟେରିଏଟ୍—ସେଇ ମନ୍ତ୍ରୀଙ୍କ ଅଫିସକୁ । ପୁଣିଥରେ ବୁଝେଇବାକୁ ହବ ମୂଳରୁ ଯେ ମୁଁ ନିର୍ଦ୍ଦୋଷ ଇତ୍ୟାଦି ?"

ମୋ ପ୍ରଶ୍ନରେ ଶାନ୍ତି ହସେ ନାହିଁ, ବରଂ ଆଶ୍ଚର୍ଯ୍ୟ ହୋଇଯାଏ । ପଚାରେ "ସେଠିକି ଯିବାକୁ କିଏ କହୁଚି ତମକୁ ? କୋଉ ମନ୍ତ୍ରୀ ବୁଝିବେ—ବୁଝିପାରିବେ ତମ କଥା ? ତମର ଯଦି ଏତେ ବୁଝେଇବାର ଇଚ୍ଛା, ତେବେ ଯାଉନ କିଆଁ ଲୋକଙ୍କ ପାଖକୁ !"

"କୋଉ ଲୋକ ?" ଶାନ୍ତ ମୁହଁରୁ ମାଧବଙ୍କ ନାଁ ଛଡ଼ା ଅନ୍ୟ ଏକ ନାମ ଶୁଣି ଚମକିପଡ଼େ ମୁଁ ।

"ଯୋଉ ଲୋକେ ଭୋଟ୍ ଦେଇ ମନ୍ତ୍ରୀ ହେଉଛନ୍ତି, ସେଇ ଲୋକ—ଯାଉନ କିଆଁ ସେମାନଙ୍କ ପାଖକୁ ! ତୁମର ବେଳ ଆସିଗଲା । ତମ ଦେହ ସରକାରୀ ଗୋଲାମି କରିକରି ଆଉ ସହନାହିଁ—ବୁଝୁନ କେମିତି ଏ କଥା !"

ଶାନ୍ତ ମୁହଁରୁ ଏ ତତ୍ତ୍ୱ ସ୍ୱପ୍ନରେ ସୁଦ୍ଧା ଶୁଣିବ ବୋଲି ଆଶା କରି ନଥାଏ ମୁଁ । ଭାରତରେ କୌଣସି ମଧ୍ୟବିତ୍ତ ପରିବାରର ସ୍ତ୍ରୀ ତାର ଅର୍ଜନକ୍ଷମ ସ୍ୱାମୀକୁ ଏପରି ଉପଦେଶ ଦେବା ସମ୍ଭବ—ଭାବି ପାରେନାହିଁ ମୁଁ । ବୋଧହୁଏ ସେଇଥିପାଇଁ କଥାଟିକୁ ପରିଷ୍କାର କରିଦେବା ଉଦ୍ଦେଶ୍ୟରେ ପଚାରିଲି ସେ ଅବୋଧ ପ୍ରଶ୍ନଟିକୁ ସେଦିନ ଗାଢଅଧରେ ମୁଁ ।

"ଭାରତରେ ଲୋକ କାହାନ୍ତି ଶାନ୍ତ ? ପୁଣି ଇଣ୍ଟେଲେକ୍ଚୁଆଲମାନେ ଯେଭଳି ଏକ୍ସପ୍ଲଏଟ୍ କରିଚାଲିଛନ୍ତି ଏ ଲୋକଙ୍କୁ ସେଥିରେ କୋଉ ଲୋକ ଶୁଣିବ ଆମ ପରି ଧପ୍‌ପାବାଜ୍‌ମାନଙ୍କ କାନକୁହାକୁ ?"

"ଲୋକ ଅଛନ୍ତି !" ଶାନ୍ତ ତା ଗୁଣ୍ଡ ଉପରୁ ଆସ୍ତେ କରି କାଢ଼ିଦେଲା ମତେ ଓ ମା'ମାନେ ଶ୍ରେଣ୍ଟ ପିଲାଙ୍କୁ ତଳେ ଠିଆକରି ଗୃହ ଶିଖାଇଲାଭଳି ଢଙ୍ଗରେ କହିଲା, "ତମେ ଦେଖିନା ଲୋକଙ୍କୁ । ମୋର ଭିକାରିଧାନଙ୍କୁ ଚିହ୍ନ ତମେ ?" ପଚାରିଲା ସେ ।

ଅନେକ ବର୍ଷ ଧରି ଆମ ଘର ଆଗରେ ଭିକାରିମାନଙ୍କର ମେଳା ଦେଖି ଆସିଥିଲି ମୁଁ । ଏ ମେଳାକୁ ମୁଁ ପୂର୍ବେ ବିରକ୍ତ ହେଉଥିଲି ଅବଶ୍ୟ । କିନ୍ତୁ ଆଜିକାଲି ଚାକିରିରୁ ଦୀର୍ଘଦିନ ଅବ୍ୟାହତି ନେଇ ସେକ୍ରେଟେରିଏଟ୍ ଧାଁଧପଡ଼ ମଝିରେ ଥରେ ଥରେ ରାସ୍ତା-କଡ଼କୁ ବହୁ ସମୟ ଧରି ଅନାଇବା ଏକପ୍ରକାର ଅଭ୍ୟାସରେ ପଡ଼ି ଆସୁଥାଏ ମୋର । ବିଶେଷତଃ ଦୁଇନମ୍ବର ୟୁନିଟ୍‌ର ମାଛହାଟ ପାଖରେ, ହନୁମାନ ମନ୍ଦିର ସାମନାରେ ସେଇ ରାସ୍ତାକଡ଼ ଝଙ୍କାଳିଆ ଗଛଗୁଡ଼ାକ ତଳେ ଦଳକରି ରହୁଥିବା ପଞ୍ଚାଏ ଭିକାରିଙ୍କ ବସ୍ତି ଉପରେ ଆଖି ପଡ଼ିଯାଏ ମୋର ଏବେ ଘୁଏଁ ଘୁଏଁ । ତାର ପ୍ରଧାନ ଆକର୍ଷଣ ଭିକାରି ନୁହଁନ୍ତି—ଗୋଟିଏ ଭାଲୁ ! କେହି ଗୋଟିଏ ଭିକାରି ଦମ୍ପତି ଏକ ଖେଳ-ଭାଲୁ ବାନ୍ଧିଥାନ୍ତି ସେଠି । ସେଇ ଭାଲୁଖେଳ ଦେଖିବାକୁ ମୁହୂର୍ତ୍ତେ ଅଟକିଯିବା ଭିତରେ ଗୋଟିଏ ଅଦ୍ଭୁତ ସଂସାର ଆବିଷ୍କାର କରିଥିଲି ମୁଁ । ସାମାନ୍ୟ ଅନୁସନ୍ଧାନ ଉତ୍ତରେ ବୁଝିନେଇଥିଲି ବ୍ୟାପାରଟାକୁ ମଧ୍ୟ ।

"କି ବାବୁ ! ଆସିଗଲ !" ଗୋଟିଏ ସ୍ତ୍ରୀଲୋକର ସ୍ୱର ପ୍ରଥମେ ଚମକେଇ ଦେଇଥିଲା ମତେ ସେଇ ମାଛହାଟ ସାମନା ଭିକାରି ପଲ୍ଲୀରେ ।

ଅବାକ୍ ହୋଇ ସ୍ତ୍ରୀଲୋକଟିକୁ ଅନାଉ ଅନାଉ ଆସି ଯୁଟିଯାଇଥିଲେ ଆଉ କେତେ ଜଣ ସ୍ତ୍ରୀ, ପୁରୁଷ, ଶିଶୁ, ବୃଦ୍ଧ, ଅକର୍ମଣ୍ୟ ଆଉ କୁଷ୍ଠରୋଗୀ ମଧ୍ୟ ।

ମୋର ଅବାକ୍ ହେବାର କାରଣ—ସେମାନେ ମତେ ଚହ୍ନିଥିଲେ; ଅଥଚ କାହାରିକୁ ଚହ୍ନି ନଥିଲି ମୁଁ । ଜୀବନରେ ପ୍ରଥମଥର ପାଇଁ ସେସବୁ ମୁହଁ ଦେଖୁଥିଲି ଅବା ମୁଁ । ଏହିପରି ଅଫିସରେ ସେମାନଙ୍କୁ ଚାହିଁବା ମଝିରେ ଜଣ ଜଣ କରି ସମସ୍ତଙ୍କ ମୁହଁରୁ ଶୁଣିବାକୁ ପାଇଥିଲି ମୋର ପରିଚୟ—

"ତମ ଘରଟା ହେଉ ସେ ବଜାର—ନୂଆ ବଜାରରେ ନୁହଁ ନା ବାବୁ !"

"ତମ ଘରେ ଗୋଟିଏ ବଳଦ କୁକୁର ନାହିଁ ନା ବାବୁ—ଏଇ୍ଟା ଡିଆଁ କେ୍ଂପିଣ୍ଡାରୁ ଆସି ପଡ଼ିବ ସେ ସିଧା ଫାଟକ ଉପରେ !"

"ତମ ଗାଡ଼ି କାହିଁଗଲି ବାବୁ—ଖାଲି ପାଦରେ ଚାଲୁଛ ସେ !"

"ତମ ପାନ ଝିଅଟା ସାରି କାନ୍ଦୁଥିଲାଏ—ବଡ଼ ଝିଅଙ୍କ ମା'ଭଲ ସିନହ—ପାଠ ପଢ଼ୁଚ ନା ବଡ଼ କଲେଜରେ ବାବୁ !"

ମତେ ଭଲଭାବି ଚହ୍ନିଥିଲେ ସେମାନେ, ଆଉ ତାର କାରଣ ଥିଲା ଶାନ୍ତ ନିଶ୍ଚୟ—ଜାଣିପାରିଥିଲି ମୁଁ ।

କିନ୍ତୁ ସେ ଅଚହ୍ନା ମୁହଁମାନଙ୍କ ଭିତରୁ କେବଳ ସାନ୍ତିଏ ଛଡ଼ା ଆଉ କାହାରି ମୁହଁକୁ ଚାହିଁ ଚହ୍ନି ପାରିନଥିଲି ମୁଁ ।

ପ୍ରାୟ ପନ୍ଦର ମିନିଟ୍ ପର୍ଯ୍ୟନ୍ତ ସେଇ ଅଚହ୍ନା ଲୋକଙ୍କ ମେଳରେ ମୋ ପିଲାଦିନର ଚହ୍ନା ସାନ୍ତ-ଖେଳ ଟିକିଏ ଦେଖିଯାଇ ବାହାରି ଯାଇଥିଲି ସେଦିନ ମୁଁ ମୋ କାମରେ । ତେବେ ଫେରିବା ପୂର୍ବରୁ ଜଣେ ଅଚହ୍ନା ଭିକାରିର ପଦେ କଥା ବାଜିଥିଲା ମୋ କାନରେ । ଲୋକଟା ତେରି ହୋଇ ବସିଥାଏ ପଥର ଖଣ୍ଡେ ପରି ଗୋଟିଏ ଗଛକୁ । ସାନ୍ତ-ଖେଳ ଦେଖିଯାଇ ମୁଁ ଚାଲିଯାଉଛୁ ଦେଖି ଡାକିଲା ସେ ମତେ ସେଇ ଗଛମୂଳୁ । କହିଲା, "ବାବୁ ! ମା'ଙ୍କୁ କହିଦେବ, ଆଉ ଏ ମଙ୍ଗଳବାର ଯାଇପାରିବ ନାହିଁ ମୁଁ ! ରୋଗ ବଢ଼ିଗଲା । ଉଠିବା ସମ୍ଭବ ନୁହଁ ଆଉ !"

ଲୋକଟାକୁ ଅନେଇ ଦେଖିଲି । କୁଷ୍ଠରୋଗୀଟାଏ ନିଶ୍ଚୟ । ବ୍ୟାଧିର ମାତ୍ରା ଅତି ଭୟଙ୍କର ନୁହେଁ । କିନ୍ତୁ କୌଣସି କାରଣରୁ ଚଳନ୍ତି ଶକ୍ତି ରହିତ ସେ ।

ଲୋକଟାକୁ ବେଶି ସମୟ ଅନାଇବା ସମ୍ଭବ ନଥିଲା ସେତେବେଳେ । ଶାନ୍ତ ପ୍ରତି ତା'ର ବାର୍ତ୍ତାକୁ ମନେରଖିବାକୁ ଚେଷ୍ଟା କରିନଥିଲି ମୁଁ । ସାନ୍ତଖେଳ ଦେଖିଯାଇ ତତବର ହେଇ ଚାଲିଯାଇଥିଲି ମୁଁ ଦେହେଟେସେଏଟ୍‌କୁ ମନ୍ତ୍ରୀଙ୍କ ଦରବାରକୁ ।

କିନ୍ତୁ ସେଦିନ ରାତିରେ ଶାନ୍ତ ମୁହଁରୁ ତା'ର ଭିକାରିମାନଙ୍କ କଥା ଶୁଣୁଶୁଣୁ ମନେ-ପଡ଼ିଯାଇଥିଲା ମୋର ସେ ଦୃଶ୍ୟଟା ।

• "ତମର ସେ ଭିକାରିମାନଙ୍କୁ ଚହ୍ନେ ମୁଁ…", ଏକ ପ୍ରକାର ତାଚ୍ଛଲ୍ୟ ପ୍ରକାଶ ପାଇଥିଲା ସମ୍ଭବତଃ ମୋ ସ୍ୱରରେ ସେତେବେଳେ । ଆଉ ସେ ତାଚ୍ଛଲ୍ୟକୁ ସମ୍ପୂର୍ଣ୍ଣରୂପ

ଦେବାପାଇଁ କହୁଥିଲି ମଧ୍ୟ ଆନ୍ତରେ ପଦେ, "ସେଇ କୃଷ୍ଣରୋଗୀ—ଯେ ଆସେ ପ୍ରତି ମଙ୍ଗଳବାର—ସେଇମାନେ ନା ! ସେଇମାନେ ଭେଟ୍ ଦେବେ ଆମକୁ !"

ତା ପରେ ଆଉ ପଦେ ଯୋଗ କରିଥିଲି ମଧ୍ୟ ମୁଁ—

"ଜାଣ ଶାନ୍ତ ! ସେ ଲୋକଟା ପଡ଼ିଛି ବର୍ତ୍ତମାନ ଗୋଟିଏ ଗଛମୂଳେ—ଦୁଇନମ୍ବର ମାଛହାଟ ପାଖ ହନୁମାନ ମନ୍ଦିର ସାମନାରେ । ତମ ପାଇଁ ପଠେଇଥିଲି ଖବର—ମଙ୍ଗଳବାରଦିନ ଆଉ ଆସି ପାରିବନାଇଁ ମେ ଏଠିକି ଭିକ ନବାକୁ !"

ମତେ ସ୍କୁଲ ଶିଖୁଥିବା ଶ୍ରେଷ୍ଠ ପିଲଙ୍କ ପରି ଗ୍ଯାଡ଼ଦେଇଥିଲି ତଳେ ଟିକଏ ପୂର୍ବରୁ ଶାନ୍ତ । ବର୍ତ୍ତମାନ ମୋର ଖିଲ୍ ଖିଲ୍ ହସ ଶୁଣି ଖୁସି ହେବା ପରିବର୍ତ୍ତେ ହଠାତ୍ କାନ୍ଦି-ଉଠିଲି ସେ ।

ଶିଶୁଟିଏ ତା ମା'ର ଦୁଃଖ ଦେଖି ମଧ୍ୟ ନ ବୁଝି ପାରିଲା ପରି ସାମାନ୍ୟ ଆଶ୍ଚର୍ଯ୍ୟ ହୋଇଗଲେ ମୁଁ । ଶାନ୍ତର ହାତ ଧରିପକେଇ ଅବୋଧ ଶିଶୁପରି ପଚାରିଲି, "କଅଣ ହେଲା ! କାନ୍ଦୁଚ କାହିଁକି ଶାନ୍ତ ! ତମ କଥା ଶୁଣିବି ବୋଲି ମୁଁ ତ ମନେ ମନେ ସ୍ଥିର କରିନେଇଚ···ମୁଁ ଯିବି ଲୋକଙ୍କ ପାଖକୁ···!"

"ଲୋକଙ୍କ ପାଖକୁ ତମେ ଯାଇପାରିବ ନାହିଁ ଆଦୌ !" ଶ୍ରେଷ୍ଠ ପିଲାକୁ ଦଣ୍ଡ ଦେଲାପରି ମତେ ଗ୍ଯାଡ଼ଦେଇ ଉଠି ଚାଲିଗଲେ ସେ । ଅଳ୍ପ ସମୟ ପରେ ତା'ର କଇଁ କଇଁ କାନ୍ଦ କାନରେ ପଡ଼ିଲା ମୋର ।

ରାତି ଅଧରେ ବିନା କାରଣରେ କମ୍ବା କେଉଁ ଦୁର୍ବୋଧ୍ୟ ଅସହ୍ୟ ଦୁଃଖରେ ସ୍ତ୍ରୀ-ଲୋକଟିଏ ଅନ୍ଧାରକୁ ମୁହଁକରି ଏକାକିନୀ ହୋଇ କାନ୍ଦୁଥିବା ଦୃଶ୍ୟ ମୋ ଦେହରେ ସାଏ ନା ଆଦୌ ।

"ବନ୍ଦ କର !" ଠାକୁରଘର ଦୁଆରବନ୍ଧ ତଳ ଚଟାଣରୁ ଉଠିପଡ଼ି ମୁଁ ଧସିଗଲି ସେଇ ଆଡ଼କୁ ଯେଉଁଠି ଠିଆହୋଇଥିଲା ସେ—ମୋ ସ୍ତ୍ରୀ—ଶାନ୍ତ ।

ସେଦିନ ରାତିରେ ବାକିତକ ସେମିତି କାନ୍ଦ କାନ୍ଦ ଚାଲିଗଲା ଆମର । ଶାନ୍ତ କାନ୍ଦୁଥିଲା । ତା ସହିତ ମୁଁ ମଧ୍ୟ । ସେଇ କାନ୍ଦ ମଝିରେ ମଝିରେ ଶାନ୍ତର ସ୍ୱର ଶୁଣାଯାଏ ମତେ । ଆଉ ମୋର କାନ୍ଦ ବଢ଼ୁଥାଏ ।

"ତମେ ଜାଣନା—ଅନେକ ମଙ୍ଗଳବାର ଗଲାଣି ଏ ଭିତରେ !" କୋହ ଗୁପି ବହୁ କଷ୍ଟରେ କହୁଥାଏ ସେ, "ପ୍ରତିଦିନ ଅପେକ୍ଷା କରିଚ ମୁଁ ତାଙ୍କୁ !"

"କିଏ କିଏ ସେ ?" ପ୍ରଥମରୁ ବିରକ୍ତି, ଆଶ୍ଚର୍ଯ୍ୟ ଓ ଅସ୍ୱସ୍ତି ଅନୁଭବ କରି ଦାବି କରୁଥାଏ ମୁଁ ଜାଣିବାକୁ ସେ ଲୋକଟା ସହିତ ମୋ ସ୍ତ୍ରୀର ପରିଚୟକୁ । ଅତି ରୂଢ଼ କର୍କଶ ଭାଷାରେ ପଚାରିଲେ ମୁଁ ତେଣୁ, "କେହି ତମର ବନ୍ଧୁବାନ୍ଧବ, ଚହ୍ଲା ପରିଚ···ସେ କୃଷ୍ଣ ରୋଗୀଟା ଶାନ୍ତ ?"

"ମୋର ନୁହେଁ—ତମର ତମର..." ଅନନୁଭୂତ ବ୍ୟଥା ଆଉ ଏ ଫଚାରର ଅଭୂତପୂର୍ବ ଜ୍ୱାଳାରେ ବ୍ୟଥିତ, ଜର୍ଜରିତ ହୋଇଉଠୁଥାଏ ତା'ର ସ୍ୱର ଯେତେବେଳେ ଯେତେବେଳେ ସେ କହିଲି ଶେଷରେ, "ଜଣେ ଅତି ଜ୍ଞାନୀ ଲୋକ ସେ—ଅତି ସାଧୁ ସଚ୍ଚୋଟ ଲୋକ ସେ। ଜାଣ ! ପ୍ରଥମଥର ଯୋଉ ମଙ୍ଗଳବାର ସେ ଏଠିକି ଆସିଥିଲେ ମତେ ତାଙ୍କ ରୋଗ ବିଷୟ କହିଥିଲେ ସେ। ଇଞ୍ଜେକ୍‌ସନ୍ ନବାପାଇଁ ପ୍ରତି ହପ୍ତାରେ ପାଞ୍ଚସୁଉକା ପଇସା ଦରକାର ପଡ଼ୁଥିଲା ତାଙ୍କର। କିନ୍ତୁ ମୋ କାନକୁ ଶୁଭିଲା ପଚଶ ଟଙ୍କା। ଘରୁ ପଚଶଟି ଟଙ୍କା ନେଇ ବଢ଼େଇ ଦେଇଥିଲି ତାଙ୍କ ହାତକୁ !"

"ପଚଶ ଟଙ୍କା—ଗୋଟାଏ ଭିକାରିକୁ ପଚଶ ଟଙ୍କା ଦେଇଦେଲ ତୁମେ ?" ଜଣେ ପରକାଶ ଗୃହିଣୀଅର ସଦାକାର୍ପଣ୍ୟସୁଲଭ ଜିମ୍ମାଚନ୍ତା ମତେ ତଥାପି ଅଁକାନ୍ତ କରିଥାଏ।

"ନା—ଶୁଣନା ଟିକିଏ ଧୈର୍ଯ୍ୟ ଧର—" ଶାନ୍ତିର କୋହ ବଢ଼ିଗଲା ସେଇଠୁ ଓ ଯାରୁଯାଉ ଧରି ସେ କୋହ କଡ଼ିଗୁଡ଼ିକଲା। ତଥାପି ଶୁଣେଇଥିଲା ମତେ ତା'ର ଭିକାରି-ମାନଙ୍କର କାହାଣୀ ଶାନ୍ତି ସେ ରାତିରେ, ସେଇ ଜନନୀ-ସୁଲଭ ଭାଷାରେ।

"ଲୋକଟି ହିନ୍ଦୁ ନୁହେଁ, ମୁସଲମାନ। ଗରିବ ଘରର ପିଲା ନୁହେଁ। ବେଶ୍ ଚଳୁଥିଲା ସେ—ମିସ୍ତ୍ରୀ କାମ କରି। ରୋଗ ଧରିବାବେଳକୁ ଦିନକୁ କୋଡ଼ିଏ ଟଙ୍କା ପର୍ଯ୍ୟନ୍ତ ମଜୁରି ପାଉଥିଲା ସେ। କିନ୍ତୁ ହଠାତ୍ ଅସହାୟ ଭିକାରିଟିଏ କରିଦେଲା ତାକୁ ସେ ରୋଗ। ସେଇ ରୋଗରେ ଅନ୍ତତଃ ଗୃହିଣୀଅର ଭେଟ୍ ଦେଇ ଆସିଥିଲା ସେ ତା ଜୀବନରେ। ଆଉ ପ୍ରତିଥର ଭେଟ୍ ଦେବା ପୂର୍ବରୁ ତାକୁ ପ୍ରତିଶ୍ରୁତି ଦିଆଯାଉଥିଲା..."

ଶାନ୍ତିର ସ୍ୱର ଭାଙ୍ଗି ଆସୁଥିଲା...

"ସମସ୍ତେ କହିଲେ ତାକୁ—ଶେଷରେ ତମେ ବି। ଯୋଉ ମଙ୍ଗଳବାର ଦିନ ସେ ଆସିପାରିନଥିଲା, ସେଦିନ ଅନ୍ୟ ଜଣେ ଭିକାରି ଆସିଥିଲା ଆମ ପାଖକୁ। ମୋ ହାତକୁ ଦଶଟି ଟଙ୍କା ବଢ଼େଇ ଦେଇ କହିଲା—ମା, ମହମ୍ମଦ ଅଲ୍ଲୀ ବୁଢ଼ା ସୁକୁସୁକୁ ହଉଚ। ମତେ ଡାକିଲା—କହିଲା, ତତେ ଭଗବାନଙ୍କ ଦ୍ୱାହି; ଏ ଟଙ୍କା ନେ, ଫେରେଇଦବୁ। ମା'କୁ କହିବୁ—ମହମ୍ମଦ ଅଲ୍ଲୀ ବେଇମାନୀ କରିନାହିଁ ଏ ଜୀବନରେ। ଯୋଉ ରୋଗ ଭଲ କରିବାକୁ ମା' ଏ ଟଙ୍କା ଦେଇଥିଲେ, ସେ ରୋଗ ମୋ ସାଥିରେ ବେଇମାନୀ କଲା। ଇଞ୍ଜେକ୍‌ସନ୍ ଶେଷ ହେବା ପୂର୍ବରୁ ମତେ ଶେଷ କରିଦେଲା ସେ ବେଇମାନ ରୋଗ। ଏ ଦଶଟା ଟଙ୍କା ନେ—ମା'କୁ ଫେରେଇଦବୁ—ଆଉ କୋଉ ରୋଗୀ, ଦୁଃଖୀରଙ୍କିଙ୍କ କାମରେ ଯେବେ..."

ମୋର ସ୍ତ୍ରୀର ଗଳା ରୁଦ୍ଧ ହୋଇଯାଇଥିଲା। ରାତିର ସ୍ତବ୍ଧ ସେଇ ଶୂନ୍ୟତାକୁ ଆସ୍ତେ ଆସ୍ତେ ପୂରଣ କରିବାକୁ ବସିଥିଲା ଅନ୍ୟ ଏକ ସ୍ୱର ଓ'ଶ୍ରବର କାନ୍ଦରେ। ସେ ସ୍ୱର ଓ ଶାଁବ ଥିଲା ମୋର ସେଦିନ ରାତିରେ ମୂଳରୁ ମୂଳରୁ।

——

# ସେକ୍ସ ଧର୍ମ

ସିଡ ଅଧରେ, ବିଶେଷତଃ ଝିଅମାନେ, ନାକରେ ହଠାତ୍ ଅହେତୁକ ବାସ୍ନା ବାଜିଗଲେ ମନ ଯେମିତ ଉଚାଟ ହୋଇଉଠେ । ପ୍ରେମ ସେହିଭଳି ଅହେତୁକଭାବେ ମଣିଷ ଗ୍ଭଡରେ ବାଜେ ଓ ତତ୍‌କ୍ଷଣାତ୍ ମଣିଷ ପାଗଳ ହୋଇଯାଏ । ଏ ପ୍ରକାର ପାଗଳାମି ପାଇଁ ମଣିଷ ଜୀବନରେ କୌଣସି ବୟସସୀମା ନାହିଁ, ଏ ତ ନିଶ୍ଚିତ କଥା । ତେବେ ଏଥିପାଇଁ ବାଉଳୁ ଅଠର ଏକ ନିର୍ଦ୍ଦିଷ୍ଟ ବୟସସୀମା ବୋଲି ଧରି ନିଆଯାଇ ପାରେ ।

ମୋର ଘନିଷ୍ଠ ବନ୍ଧୁ ଶୋଭେଶ ଜଣେ ପକ୍‌କା ଗୃହସ୍ଥୀ ଲୋକ । ତା ବୟସ୍ ବର୍ତ୍ତମାନ ଅଠଗ୍ଭଳିଶ ବା ଅଣଗ୍ଭଶ ଗ୍ଭଲିଲେ ଗ୍ଭଲିଆଇପାରେ । ଘରବାଡ଼ି ଧନସମ୍ପତ୍ତି କାର୍ ଫ୍ରିଜ୍ ଫୋନ୍ ପ୍ରଭୃତି ବାହ୍ୟାଡ଼ମ୍ବର ଶୋଭେଶ ପକ୍ଷରେ ବିଶେଷ କଷ୍ଟଲବ୍ଧ ହୋଇଥିଲି ପରି ମନେହୁଏ ନାହିଁ । ସହରରେ ଶୋଭେଶର ଦୁଇଟା ଘର ବଡ଼ ବଡ଼ ଅଛି ବୋଲି ଇନ୍‌କମ୍‌ଟ୍ୟାକ୍ସବାଲା କୋଡ଼ିଏବର୍ଷ ତଳୁ ଲୁଚି ରଖିଛନ୍ତି ତାଙ୍କ ଖାତାପତ୍ରରେ; କିନ୍ତୁ ପ୍ରକୃତପକ୍ଷେ ଶୋଭେଶର ଘରସଂଖ୍ୟା ଆହୁରି ବେଶୀ । କେହି କେହି କହନ୍ତି— ଶଳାଟା ଭାରି ସିଆଣା ! ବାପର ଜମିଦାରୀ ଥିଲା ଯେ ସରକାର ସିନା ଜମିଦାରୀ ଉଚ୍ଛେଦ କରିଦେଲା—କିନ୍ତୁ ଶୋଭେଶ ତ ଜମିଦାର ନୁହେଁ—ଜମାଦାର । ଏ ଦେଶରେ ଅନ୍ତତଃ ଦଶଜଣ ଧନ କୁବେରଙ୍କ ବିଧବା ପତ୍ନୀମାନେ ତାଙ୍କ ସ୍ୱାମୀଙ୍କ ମୃତ୍ୟୁ ଅନ୍ତେ ଶୋଭେଶକୁ ନିଯୁକ୍ତ କରିଛନ୍ତି ତାଙ୍କ ସ୍ୱାମୀଙ୍କ ସମ୍ପତ୍ତିର ଟ୍ରଷ୍ଟି ବା ଜମାଦାରରୂପେ । ଏହା ପରେ କୋଉ ସରକାର ଶୋଭେଶ ଜମାଦାର୍‌ର କୋଉ ଜମି କି କୋଉ ଦାୟିକୁ ଧରିବ ଧରୁଥାଉ ଏବେ ।

ଅବଶ୍ୟ ଏଗୁଡ଼ାକ ସବୁ ବାହ୍ୟ । ଜମିବାଡ଼ି ଧନସମ୍ପତ୍ତିର ସମସ୍ତ ବାହ୍ୟାଡ଼ମ୍ବର ସତ୍ତ୍ୱେ ଶୋଭେଶ ବିଚରା ଗୋଟିଏ ଅତି ଭଲ ମଣିଷ । ତା'ର ସବୁଠୁଁ ଭଲଗୁଣ ହେଲା— ଫ୍ରାଙ୍କ୍‌ନେସ୍ । ବାହାରକୁ ଅତି ଚତୁର, ବ୍ୟବସାୟିକ ଓ ପ୍ରବଳ ବୁଦ୍ଧିଜୀବୀ ଭଳି ତାକୁ ତରକରେ କଥା କହିଲାବାଲା ମଣିଷଟିଏ ହେଲେ ମଧ୍ୟ ଗୋଟାଏ ଗୋଟାଏ ବେଳେ ଲୋକଟା ତା ଦେହରେ ଖଞ୍ଜା ହୋଇଥିବା ଅନ୍ୱେଷଣ ଛିଦ୍ର ବା 'କି ହୋଲ୍'ଟି କୋଉଠି ଅବସ୍ଥିତ ତାହା ଦେଖେଇ ଦେବାକୁ ପଶ୍ଚାତ୍‌ପଦ ହୁଏନାହିଁ । ସେତିକବେଳେ ତା ମୁହଁରୁ କେତେକ

ଅଲୌକିକ ଆତ୍ମଜୀବନୀ ମୂଳକ ଘଟଣାର ବର୍ଣ୍ଣନା ଶୁଣିବାକୁ ମିଳେ । ଏହି ଘଟଣା ଗୁଡ଼ିକ ଅଧିକାଂଶ ତାଙ୍କୁ ବାରବୁ ଅଠର ବର୍ଷ ଗୁଣୁଥିବା ବେଳର ଘଟଣା ବୋଲି ସେ କହେ । ଆଉ ଏଗୁଡ଼ିକ ସବୁ ଡେକ୍ସ ନୁହେଁ—ଧର୍ମସମ୍ପର୍କୀୟ ବୋଲି ସେ ଦାବି କରେ । ଏହି ହେତୁ ଅନେକ ସାଧାରଣ କୈଶୋର ସୁଲଭ ଚପଳତାଯୁକ୍ତ ଘଟଣା ଶୋଭେଣ ମୁହଁରୁ ଅଲୌକିକ ଅଲୌକିକ ଶୁଭେ ମଧ୍ୟ । ତେବେ ସେ ଯାହା ହେଉନା କାହିଁକି, ଶୋଭେଣ ଯେ ଗୋଟିଏ ଭଲମଣିଷ ଆଉ ତାର ଏକାଧିକ କୋଠାବାଡ଼ି, ଗାଡ଼ି, ସ୍ତ୍ରୀ ବା ରକ୍ଷିତାଙ୍କ ପରେ ସେ ଯେ ଦିନେ ହଠାତ୍ ବାବାଜୀ ନ ହେଲେ ବି ଏକ ବଡ଼ଧରଣର ଦେଶସେବକ ଭଳି ତାର ସବୁ ବାହ୍ୟାଡ଼ମ୍ବରକୁ ଫୋପାଡ଼ି ଫୁଙ୍କି ଦେଇ ନଙ୍ଗଳା ହୋଇ ଘରୁ ବାହାରିପଡ଼ିବ ଏଭଳି ଆଶଙ୍କା ନକରିବାକୁ ଗୃହ ନଥାଏ ।

ଆଉ, ଅନତିବିଳମ୍ବ ପୂର୍ବରୁ ଆମର ଯେ ଆଶଙ୍କା ଅକ୍ଷରେ ଅକ୍ଷରେ ସତ୍ୟ ପ୍ରମାଣିତ ହୋଇଗଲା ମଧ୍ୟ ।

"ହାଲୋ···କିଏ ମିଃ···କନ୍ଦ୍ରଚନ୍ଦ୍ର ? ଅଚ୍ଛା ଶୋଭେଣ ବାବୁ ଆପଣଙ୍କ ଆଡ଼େ···? ନା ? ତେବେ ! ଅଃ···"

ଏ ତ ଲେ ଓଡ଼ିଆରେ, ଏହା ପରେ ବଙ୍ଗଳାରେ, ହିନ୍ଦରେ ଏପରିକି ତେଲୁଗୁ ଭାଷାରେ, ପୁଣି ଅତି ମଧୁର ଆଉ ଆତୁର ନାରୀ କଣ୍ଠରେ ଅନ୍ତତଃ ପାଞ୍ଚ ଆଠଟି ଟେଲିଫୋନ୍ କଲ୍ ଅଳ୍ପ ଅଳ୍ପ ସମୟ ବ୍ୟବଧାନରେ ପାଇଗଲା ପରେ ବ୍ୟାପାରଟା ସମ୍ପର୍କରେ ଆଉ କି ସନ୍ଦେହ କରାଯାଇପାରିଥାନ୍ତା କହନ୍ତୁ ତ ! ଶୋଭେଣ ଯେ ସତକୁ ସତ ଗୋଟାଏ କିଛି ଅଲୌକିକ କାଣ୍ଡ କରିବସିଲା ତା ପିଲାଦିନ ପରି ପୁଣି ଥରେ, ଏ ବୟସରେ, ଏକଥା ତା ନିଜ ଲୋକମାନେ ସନ୍ଦେହ କଲେ କରନ୍ତୁ, ନକଲେ ନକରନ୍ତୁ, ଅନ୍ତତଃ ମୁଁ ଜାଣିପାରିଥିଲି ସବୁ କଥା ସେତେବେଳକୁ; କିନ୍ତୁ ମୋ ମନରେ ଆଉ କେବଳ ଗୋଟିଏ ପ୍ରକାର ଦ୍ୱିଧା ସେପର୍ଯ୍ୟନ୍ତ ଅସମାହିତ ହୋଇ ରହିଯାଇଥିଲା । ଶୋଭେଣର ସ୍ତ୍ରୀ, ନାରୀବନ୍ଧୁ ବା ରକ୍ଷିତା—ଯାହା କୁହନ୍ତୁ ସେମାନଙ୍କୁ—ସେମାନେ ଯେତେବେଳେ ଟେଲିଫୋନ୍ ଜରିଆରେ ମତେ ପୁନର୍ବାର ଡାକ ଜଣାଇଦେଲେ ଯେ ଘଟଣା ଅଧିକ ଗୁରୁତର—ଶୋଭେଣର ଗାଡ଼ି ଗୋଟିଏ ଜଙ୍ଗଲ ପାଖରୁ ମିଳିଛି ଓ ଗାଡ଼ି ଭିତରେ ଲାଗିଛି ରକ୍ତର ଦାଗ—ଧୀରେ ଧୀରେ ମୋ ମନରୁ ସେ ଦ୍ୱିଧା ମଧ୍ୟ ଦୂରିଗଲା । ଆଉ, ମୁଁ ନିଜକୁ ନିଜେ ଏଥର ପ୍ରବୋଧ ଦେବା ଅବସ୍ଥାକୁ ଆସିଗଲେ । ନିଜକୁ ନିଜେ କହିଲି— "ବୁଝିଗଲି—ସେଇ ପାଗଲାମି—ଆକ୍ଟ୍ ଡେ଼ ସୁଇସାଇଡ୍ ତେବେ ନୁହେଁ ।"

କିନ୍ତୁ ନାଁ ଶୋଭେଣ୍ ଆଖିର ସୁଇସାଇଡ୍ ହିଁ କରିଥିଲା—ସୁଇସାଇଡ୍, ଅର୍ଥାତ୍ ଆତ୍ମହତ୍ୟା । ତାର ଏପ୍ରକାର ଅପକର୍ମ ପାଇଁ ଶୋଭେଣର ସେଇ ପିଲାଦିନର ପ୍ରେମ-ପାଗଳାମୀ ହିଁ ପ୍ରକୃତରେ ଯୋଗାଇଦେଇଥିଲା ତାକୁ ସେ ଭୟଙ୍କର ପ୍ରେରଣା ।

ଶୋଭେଶର ସ୍ତ୍ରୀ ଓ ବହୁସଂଖ୍ୟକ ରକ୍ଷିତାମାନଙ୍କଠାରୁ ଓଡ଼ିଆ, ବଙ୍ଗଳା, ହିନ୍ଦି, ତେଲୁଗୁ ପ୍ରଭୃତି ନାନା ଜାତିର ଭାଷା ସମ୍ବଳିତ ଟେଲିଫୋନ୍ କଲ୍‌ଗୁଡ଼ାକ ପାଇବାର ବହୁବର୍ଷ ପରେ ମୁଁ ସସ୍ତ୍ରୀକ ପୁଣ୍ୟ ଶ୍ରୀମନ୍ଦିରରୁ ଠାକୁର ଦର୍ଶନ ସାରି ବାହାରୁଛୁ—ହଠାତ୍ ମୋ ଆଖିରେ ପଡ଼ିଗଲା ଗୋଟିଏ ଅଦ୍ଭୁତ ଦୃଶ୍ୟ । ସ୍ତ୍ରୀଙ୍କୁ ଡାକି ମୁଁ ତତ୍‌କ୍ଷଣାତ୍ ଦେଖେଇ ଦେଲି ସେ ଦୃଶ୍ୟଟିକୁ ଓ କହିଲି—"ଦେଖିଲ ଦେଖିଲ—ସେ କୁଷ୍ଠରୋଗୀ ବୁଢ଼ାବୁଢ଼ୀ ହଳକ କେଡ଼େ ପ୍ରେମରେ ବସିଚନ୍ତି !"

ସ୍ତ୍ରୀ ମଧ୍ୟ ଚମକି ପଡ଼ିଲା ପରି ସେ ଅଦ୍ଭୁତ ଦୃଶ୍ୟଟିକୁ ଦେଖୁ ଦେଖୁ ମୋ ହାତକୁ ଧରି ପକେଇ କହିଲେ—"ଆହା, ଭଗବାନଙ୍କର କି ଲୀଳା ! ଏଣେ ରୋଗ ଦେଇଛନ୍ତି, ତେଣେ ପ୍ରେମ ଦେଇଛନ୍ତି—ହେ ସତେ ମ ! କି ସୁନ୍ଦର ଯୁଗଳ ମୂର୍ତ୍ତିଭଳି ଦିଶୁଛନ୍ତି—ହା ଭଗବାନ···"

ଆଉ ସେତିକରେ ସ୍ତ୍ରୀଙ୍କ ସ୍ୱର ସକରୁଣ ଶୁଣାଗଲା । ମଣିଷର ଦୁର୍ଭାଗ୍ୟ, ବିଶେଷତଃ ଭଲ ମଣିଷଙ୍କ ଦୁର୍ଭାଗ୍ୟ ଦେଖିଲେଇ ସେ ବରାବର ଏଇଭଳି ସହାନୁଭୂତି ପ୍ରଦର୍ଶନ କରୁ କରୁ ମନମରି ତରଳିଯାନ୍ତି, କାନ୍ଦି ବି ପକନ୍ତି ।

ତାଙ୍କୁ ଏପରି ଅବସ୍ଥାରେ ପ୍ରବୋଧ ଦେବାପାଇଁ ଏକମାତ୍ର ରାସ୍ତା—ଘଟଣାସ୍ଥଳରୁ ବାଟ କାଟି ଚାଲିବା ଓ ଭଗବାନଙ୍କର ଅନ୍ୟ ସାଧାରଣ ଲୀଳା ପ୍ରତି ଧ୍ୟାନ ଆକର୍ଷଣ କରିଦେବା ।

ମୁଁ ପ୍ରାୟ ସେଇ ମତଲବରେ ଟିକିଏ ଦୂରରେ ଥିବା ଶଙ୍ଖ, ମାଳିଦୋକାନଗୁଡ଼ାକ ଆଡ଼କୁ ବାଟ କାଟୁଥିଲି । କିନ୍ତୁ ହଠାତ୍ ମୋର ସହଧର୍ମିଣୀଙ୍କର ଆତଙ୍କିତ ଚାପା ସ୍ୱର ମତେ ସ୍ଥାଣୁ କରିଦେଲା—"ଦେଖ ଦେଖ—ହେ ଦେଖୁଚ ! ଏ ତ ତମ ସାଂଗ ସେଇ ଶୋଭେଶ ନା କିଏ—ଦେଖିଲ ଦେଖିଲ !"

ଆରେ ! ଆରେ !—କହୁ କହୁ ମୋର ସ୍ଥାଣୁତ୍ୱ ଏକ ଦୃଶ୍ୟମାନ ସ୍ନାୟୁବିକତାରେ ପରିଣତ ହୋଇଗଲା ।

"ଆସ୍ତୁ ଶୋଭେଶ···ଆସ୍ତୁ ଶୋଭେଶ···" ସେତେବେଳକୁ ସ୍ଥାନ କାଳ ପାତ୍ର ଭୁଲି ମୁଁ ବଡ଼ଦାଣ୍ଡ ମଝିରେ ଏକ ଦୃଶ୍ୟ ରଚନା କରିସାରିଥିଲି ପ୍ରାୟ । କାରଣ ବଡ଼ଦାଣ୍ଡରେ କୌଣସି କୁଷ୍ଠରୋଗୀକୁ କୌଣସି ଭଦ୍ରଲୋକ କେବେ ଏଭଳି ଗୋଡ଼ାଇବା ଓ ରୋଗୀ ବିଚରା ଭୟରେ ପଛେଇ ପଛେଇ ଯାଉ ଯାଉ ଇଂରେଜୀରେ "ଷ୍ଟେ, ଷ୍ଟେ ଦେୟାର୍—ଡୋଣ୍ଟ···ଡୋଣ୍ଟ୍ ଟଚ୍ ମି ୟୁ ଇଡ଼ିଅଟ୍" ଶୋଧି ଶୋଧି ଆପଣା ମର୍ଯ୍ୟାଦା ଅଟେ ଅଟେ ରଖିବାକୁ ଚେଷ୍ଟା କରୁଥିବା ଦୃଶ୍ୟ ଗତ ହଜାରେ ବର୍ଷ ଭିତରେ ଥରେ ବି ଘଟିଥିବ କି ନଥିବ ।

ଏଇ ଅବସରରେ ମୋର ଧର୍ମପତ୍ନୀ ଶୋଭେଶ୍‌ର ସେଇ ହତଭାଗିନୀ ନାୟିକାଟି ସହିତ ବେଶ୍ କିଛି ଆତ୍ମୀୟତା ଜମେଇ ନେଇଥିଲେ ଅବଶ୍ୟ ଏବଂ ଯଥାରୀତି ସବୁ ଗୃହସ୍ଥମାନେ ଯେପରି ନିଜ ପତ୍ନୀ ଜରିଆରେ ପର ଘରର ସବୁ ଖବର, ସବୁ ଛିଦ୍ର ଶୁଣିବାକୁ ପାଇଥାନ୍ତି, ଅବିକଳ ସେଇ ରୀତିରେ ଭିତର ଘଟଣାଟି ମୁଁ ଢେର୍ ଡେରିରେ ପ୍ରାପ୍ତ ହୋଇଥିଲି । ସେଦିନ ବଡ଼ଦାଣ୍ଡରେ ଅବଶ୍ୟ ସେ କୁଷ୍ଠରୋଗୀକୁ ଶୋଭେଶ ବୋଲି ଚିହ୍ନଟ କରିବା ପାଇଁ ମୁଁ ଯେଉଁ ନିର୍ମମ ପ୍ରଚେଷ୍ଟାଟି ଚଳେଇଥିଲି ସେଥିରେ ପାଶ କରିବା ତ ଦୂରର କଥା, ଓଲଟା ଢେର୍ ଅପମାନ ପାଇ ଯାଇଥିଲି । କାରଣ ଶୋଭେଶ ତ ଧରାଛୁଆଁ ଦେଲାନାହିଁ, ଓଲଟି କେତେଜଣ ଯୁବକ ମତେ ଟିଟିକାର୍ ମାରି କହିବାର ଶୁଣାଯାଇଥିଲା—"ଶଳା ବାପ୍ପା, କୁଷ୍ଠରୋଗୀକୁ ନାଁ ପଚାରୁଛି—ବେଶ୍ୟାକୁ ଜାତି ପଚାରୁଛି !"

ସେଦିନ ରାତିରେ, ଗୋଟିଏ ନିରୋଳା ବେଳ ଦେଖି ପତ୍ନୀ କହିଲେ, "ତମ ସାଙ୍ଗ ଶୋଭେଶ ବାବୁ ଜଣେ ସନ୍ଥ···ଜଣେ ଅତି ବଡ଼ ସନ୍ଥ ସେ !"

କହୁ କହୁ ତାଙ୍କ ଆଖିରୁ ଲୁହ ବୋହି ଆସିଲା, ଆଉ ମୁଁ ବୁଝିନେଲି ସେ ଯାହା କହୁଥାନ୍ତି ଅନ୍ତା ନୁହେଁ—ପ୍ରଗାଢ଼ ଧାର୍ମିକ ଭାବାବେଗର ଭାଷା ସେଗୁଡ଼ାକ ।

ତଥାପି, ଦିନର ଅପମାନ ମନେପକେଇ ମୁଁ ଅନ୍ୟ ଦିଗକୁ ଗୁହିଁ ପ୍ରତିବାଦ କଲି—"ସନ୍ଥ ! ହୁଁ—ଭାରି ସନ୍ଥ ଶଳାଟା ! ତାରି ତ ଭାରତବର୍ଷ ଗୋଟାକଯାକ ସବୁ ସହରରେ ଗୋଟାଏ ଗୋଟାଏ ଘର—ଗୋଟାଏ ଗୋଟାଏ ରକ୍ଷିତା··· ! କୁଷ୍ଠ ଭୋଗୁଛନ୍ତି ସନ୍ଥ ମହାରାଜ···ଉଁ···ସନ୍ଥ ମହାରାଜ !"

"ସାରା ପୃଥିବୀରେ ସନ୍ଥ ସେଇମାନେ ଯେଉଁମାନେ ପ୍ରକୃତରେ ଜାଣନ୍ତି ପାପର ସ୍ୱରୂପ···" ଧାର୍ମିକ ଭାବାବେଗବଶତଃ ସ୍ତ୍ରୀଙ୍କର ସ୍ୱର ଗୁମ୍‌ସୁମ୍ ଶୁଣାଯାଉଥାଏ ।

"ପାପର ସ୍ୱରୂପ ହିଁ ପାପ—"ମୁଁ ଚହଙ୍କି ଉଠିଲି ।

"ପାପର ସ୍ୱରୂପ ପାପ ନୁହେଁ—ଅହଂକାର ! ସନ୍ଥମାନେ ହିଁ ଜାଣନ୍ତି କ'ଣ ସେ ଜିନିଷ ଯାହା ନାଁ ଅହଂକାର । ତମ ସାଙ୍ଗ ଶୋଭେଶ ବାବୁଙ୍କ ଅସଲ ଅହଙ୍କାର ନଥିଲା ତାଙ୍କ କୋଠାବାଡ଼ି ଓ ରକ୍ଷିତାଙ୍କ ସଂଖ୍ୟାରେ । ସେଇଟା ଥିଲା ଅସଲରେ ତାଙ୍କ ପିଲାଦିନର ଗୋଟାଏ ପ୍ରକୃତ ଘଟଣାରେ । ସେ ଯୋଉ କୁଷ୍ଠରୋଗିଣୀଟିକୁ ଦେଖିଲ ସେଇ ପ୍ରକୃତରେ ତାଙ୍କ ସ୍ତ୍ରୀ—ବୁଝିଲ— !"

"ମାନେ ?" ମୁଁ ଏଥର ସିଧା ମୋ ସ୍ତ୍ରୀଙ୍କର ଆଖିରେ ଆଖି ନମିଳାଇ ରହିପାରିଲି ନାହିଁ । ପଚାରିଲି, "ଶୋଭେଶ ଗୋଟାଏ କୁଷ୍ଠରୋଗିଣୀକୁ ଜାଣିଶୁଣି ବାହା ହେଇଥିଲା ନା କଅଣ !"

"ନା—" ଏକ ତୀକ୍ଷ୍ଣ ନେତିବାଚକ ଢଙ୍ଗେ ଏଭଳି ଦାମ୍ଭିକ ସ୍ପଷ୍ଟୋକ୍ତି ସହିତ କୌଣସି ସ୍ତ୍ରୀଲୋକ ମୁହଁରୁ ମୁଁ ଜୀବନରେ କେବେ ଶୁଣିଥିଲି ବୋଲି ମନେ ହୁଏନା ।

କିନ୍ତୁ ଅବକ୍ରିଳ ମୋର ଧରଣର ନେତିବାଚକତା ସତ୍ତ୍ୱେ ମଧ୍ୟ ସେ ସ୍ୱର ମିଳେଇ ପୁଣି କହିଲେ, "ହଁ, ଜାଣିଶୁଣି ବାହାହେବା ଭଳି ଅହଂକାର ନଥିଲେ ଶୋଭେଶ ସନ୍ତ ପାଲଟିଯାଆନ୍ତେ ପୁଣି କିପରି ?" ମୋର ମୁଣ୍ଡ ବଗିଡ଼ି ଆସୁଥିଲା ।

"କୋଉଠୁ ପାଇଲ ଏସବୁ ବାଜେ ଖବର—କିଏ କହିଲା ?" ମୁଁ ଅସ୍ଥିର ହୋଇ ପଡ଼ୁଥିଲି । ସକାଳେ ଶୋଭେଶକୁ ବଡ଼ଦାଣ୍ଡରେ ଗୋଡ଼େଇବା ବେଳର ସ୍ନାୟୁବିକତା ମତେ ସତେକି ପୁଣି ଗ୍ରାସି ଆସୁଥିଲା ।

"ସେଇଠି କୁଷ୍ଠରୋଗିଣୀ—ଶୋଭେଶର ସବା ପ୍ରଥମ ପ୍ରେମିକା ମତେ କହିଛି, ସବୁ କହିଛି—ଜାଣ ? ସେ ଝିଅଟି ଶୋଭେଶର ନିଜ ମାଉସୀ । ବାର ଚଉଦବର୍ଷ ବୟସରେ ଦୁହେଁ ପଡ଼ିଗଲେ ପ୍ରେମରେ । ଏ କଥା ଜଣା ପଡ଼ିଗଲା ପରେ ଦୁହିଁଙ୍କି ଅଲଗା ଅଲଗା କରିଦିଆଗଲା । ବର୍ଷ କେତୋଟା ପରେ ଶୋଭେଶର ମାଉସୀ ଆସି ରହିବାର ଦେଖାଗଲା ଗୋଟାଏ କୁଷ୍ଠାଶ୍ରମରେ । ଶୋଭେଶ ଗଲା ସହରକୁ ପାଠ ପଢ଼ି ଧନ ଅର୍ଜିବାକୁ, କିନ୍ତୁ ପରିଣତି ହେଲା ଏଇଆ । ଦିନେ କୁଷ୍ଠାଶ୍ରମରେ ପହଞ୍ଚି ଶୋଭେଶ ତା ମାଉସୀକୁ ଚିହ୍ନା ଦେଲା । କହିଲା—'ବହୁତ ଡେରି ହୋଇଗଲା । ମୋର ଖାଲି ଡର ଥିଲା ଏଇ ରୋଗଟାକୁ । କିନ୍ତୁ ମୁଁ ଦେଖିଲି 'ସେ' ରୋଗ 'ଯା'ଠୁଁ ବଡ଼ । ପ୍ରକୃତ ବଡ଼ ରୋଗ ସେ—ସ୍ନେହ ନୁହେଁ ! ଆ—ସିବା !"

"ଶଳା—ବାୟା ! ପାଗଳା !" ମୁଁ ଦମ୍ଭାଳ ପାରିଲି ନାହିଁ ମଣିଷର ଏଭଳି ଆତ୍ମହତ୍ୟାର ଜଘନ୍ୟ ଦୃଶ୍ୟକୁ ।

"କିନ୍ତୁ ସେମାନେ ସୁଖୀ—ନିଜ ଆଖିରେ ପରା ଦେଖି ଆସିଲି ବଡ଼ଦାଣ୍ଡରେ ତାଙ୍କର ସାଙ୍ଗ ହୋଇ ବସିବାର ସେ ଦୃଶ୍ୟକୁ ! ସୁଖର ପ୍ରମାଣ ଆଉ କ'ଣ କି ?

ମୋର ଧର୍ମପତ୍ନୀଙ୍କର ସନାତନ ଧର୍ମର ସେ କଥା ଗୁଡ଼ାକ ମତେ ଖାଲି ଅସୁଖ ଲାଗୁଥିଲେ ମଧ୍ୟ ଶୋଭେଶ ପ୍ରତି ମୋର ବୁଝାମଣା କ୍ରମେ ପରିଷ୍କାର ହୋଇଆସୁଥିଲା ।

"ଆଃ—ଏଇଆ ତେବେ ସେ କହୁଥିଲା—ଯାହା ଟେକ୍ସ କି ଧର୍ମ ଜାଣି ହେଉ ନଥିଲା…" ମୁଁ ଭାବୁଥିଲି ଶୋଭେଶର ଅତୀତ କଥା—ମଣିଷର ଭବିଷ୍ୟତ କଥା ।

——

# କ୍ଲାସ୍‌ମେଟ୍

ମନ୍ତ୍ରୀଙ୍କ ଟୁର୍ ପ୍ରୋଗ୍ରାମ୍‌ଟାକୁ ଧରି ପାନଦୋକାନୀ କଣ୍ଡୂରୀ ବାରମ୍ବାର ଗୋଟାଏ ସୁଖସ୍ୱପ୍ନ ଦେଖିଚାଲିଲା । ଯେତେ କଲେଜ୍‌ପିଲା, ଯେତେ ଓକିଲ ବା ଅଧ୍ୟାପକ, ଯେତେ ରାଜନୀତି କଲାବାଲା ଲୋକ ତା ଦୋକାନକୁ ଆସୁଥିଲେ ସମସ୍ତଙ୍କୁ ସେଇ ପଦେ କଥାରେ ସେ ସ୍ତମ୍ଭୀଭୂତ କରିଦେଲା—"ସେ କିଏ ଜାଣ ? ମୋ କ୍ଲାସ୍‌ମେଟ୍ ! ପଅରଦିନ ଆସୁଚନ୍ତି ପରା ? ରହ ଦେଖିବ—ଗାଡ଼ି ଏଇଠି ଅଟକିବ । ଏଇ ଦୋକାନ ସାମ୍ନାରେ ମନ୍ତ୍ରୀଙ୍କ ଗାଡ଼ି ଅଟକିବ । ୟେସ୍, ଅଟକିବ ।"

କଣ୍ଡୂରୀ ଜଣେ ଭଲ ପ୍ରକୃତିର ମଣିଷ । ବୟସ ବେଶି ନୁହେଁ; ଖୁବ୍ ବେଶିରେ ଚାଳିଶ ବା ପଇଁଚାଳିଶ । କିନ୍ତୁ କଣ୍ଡୂରୀର କୌଣସି ଗୋଟିଏ ଉଚ୍ଚାଭିଳାଷ ଅପୂର୍ଣ୍ଣ ରହିଯାଇଥିଲା ସମ୍ଭବତଃ । ସେଇ କାରଣରୁ ଲୋକଟା ସାରା ଗପୁଡ଼ି । ଏମିତି ଗପେ ଯେ ତା କଥା ଶୁଣିଲେ ମନେହେବ ସେଟା ଗୋଟାଏ ଟାଉଟର୍, ନହେଲେ ପାଗଳ ।

କଣ୍ଡୂରୀର ମୁଖ୍ୟ ଗରାଖ କଲେଜପିଲେ । ଗ୍ରେଟ ସହରର କେନ୍ଦ୍ରଠାରୁ ଢେର୍ ଦୂରରେ କଲେଜଟା । କିନ୍ତୁ ଏତେ ଦୂରରୁ ମଧ୍ୟ କଲେଜ ପିଲେ ପାନ ଖାଇବାକୁ ଆସନ୍ତି ସେଇ ଗୋଟିଏ ଦୋକାନକୁ—କଣ୍ଡୂରୀ ଦୋକାନକୁ । କଣ୍ଡୂରୀ ପିଲାଙ୍କୁ ଆଦର କରେ । ଭଲମନ୍ଦ ପଚାରେ । ପାଠପଢ଼ା ବିଷୟରେ ଉଦାରଣ କରେ । କଲେଜର କୋଉ କୋଉ ମାଷ୍ଟ୍ରେ ଭଲ ପଢ଼ାନ୍ତି, କିଏ କୁଣ୍ଡାଦେଇ ପାଠ ପଢ଼ିଥିବାରୁ କ୍ଲାସ୍‌ରେ ଅପମାନ ପାଆନ୍ତି, କିଏ ରାଜନୀତି କରନ୍ତି ବା କିଏ ଝିଅପିଲାଙ୍କ ପଛରେ ଗୋଡ଼ାନ୍ତି, କଲେଜ ବିଷୟରେ ସବୁ ହାଲ କଣ୍ଡୂରୀ ବୁଝେ, ତାକୁ ସବୁ ଜଣା ।

ଖାଲି କଲେଜ ବିଷୟ ନୁହେଁ; ସ୍ଥାନୀୟ କଚେରି, ଡାକ୍ତରଖାନା, ବ୍ୟାଙ୍କ୍, ବିଜୁଳି ବିଭାଗ, ଜନସ୍ୱାସ୍ଥ୍ୟ ବିଭାଗ, କୃଷି ଅଫିସ୍, ସମବାୟ ଅଫିସ୍, ପ୍ରଭୃତି ସବୁ ଅଫିସ୍‌ର ଗ୍ରେଟବଡ଼ ହାକିମଙ୍କ ଚରିତ୍ର ପଞ୍ଜିକା କଣ୍ଡୂରୀର ମୁହେଁ ମୁହେଁ । ବିଶେଷତଃ ଅଫିସର୍-ମାନଙ୍କ ଭିତରୁ କିଏ କୋଉ ଦଳର, ଅର୍ଥାତ୍ କାହାର ରାଜନୈତିକ କାର୍ଯ୍ୟକଳାପ କେଉଁ ରାଜନୀତିଦଳକୁ କିଭଳି ସୁହାଏ କଣ୍ଡୂରୀକୁ ଖୁବ୍ ଜଣା । ଖାଲି ସେତିକି ନୁହେଁ; କୋଉ କୋଉ ଅଫିସର୍ କୋଉ କୋଉ ମନ୍ତ୍ରୀଙ୍କ ପାଖଲୋକ, କୋଉ କୋଉ ମନ୍ତ୍ରୀ କି ଏମ୍. ପି, ଏମ୍. ଏଲ୍. ଏ,ଙ୍କ ଭିତରେ ଫଟାଫଟି କି ମଠାମଠି କେତେ ତାଷ୍ୱର ଏ ବିଷୟରେ ମଧ୍ୟ କଣ୍ଡୂରୀର ବୁଝାମଣା ବେଶ୍ ତୀକ୍ଷ୍ଣ ।

ଏଇସବୁ ବିଷୟକୁ ନେଇ କଣ୍ଠୁରୀ ପାନଦୋକାନଟି ସ୍ଥାନୀୟ ସ୍ଲେଟ ସହରଟି ଭିତରେ ଗୋଟିଏ ଅତି ସକ୍ରିୟ ରାଜନୈତିକ ଚକ୍ରାନ୍ତ କେନ୍ଦ୍ର ରୂପେ ପରିଚିତ । କିନ୍ତୁ କଣ୍ଠୁରୀ ଲୋକଟି ରାଜନୀତିରେ ନଥାଏ ବା ତାର କୌଣସି ରାଜନୈତିକ ଅଭିଳାଷ ନଥାଏ, ଏହା ସ୍ୱତଃସିଦ୍ଧ । କାରଣ ବିଗତ ଦୁଇ ତିନିଟା ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି, ଏନ୍ ଏ. ସି. ବା ସାଧାରଣ ନିର୍ବାଚନରେ କଣ୍ଠୁରୀକୁ ବିଭିନ୍ନ ରାଜନୈତିକ ଦଳରୁ ନାନା 'ଅଫର୍' ଆସିଥିଲେ ସୁଦ୍ଧା ସେ ନିଜ ଦୋକାନ ଖଣ୍ଡିକ ଛାଡ଼ି କୁଆଡ଼େ ହେଲେ ପଶିଯିବାର ଚିନ୍ତା କେବେହେଲେ କରିପାରିନାହିଁ, ଏକଥା ସମସ୍ତେ ଜାଣନ୍ତି । ତେଣୁ କଣ୍ଠୁରୀ ଲୋକଟାର ଅପୂର୍ଣ୍ଣ ଉଚ୍ଚାଭିଳାଷ ଯେ ଅଫିସର ଲୋକଙ୍କ ଉଚ୍ଚାଭିଳାଷ ପରି ପୂରାପୂରି ରାଜନୈତିକ, ତା ଛଡ଼ା ଆଉ କିଛି ନୁହେଁ—ଏକଥା ଭାବି ହୁଏନାହିଁ । ତଥାପି ଗପୁଡ଼ି ଲୋକଟାର ଗପସପ କଥାବାର୍ତ୍ତାରୁ ଖାଲି ରାଜନୀତି ଛଡ଼ା ଆଉ ବେଶୀ କିଛି ଗହିରିଆ ନୀତି ବା ତତ୍ତ୍ୱ ଅଥବା ଉଚ୍ଚାକାଙ୍‌କ୍ଷାର କୌଣସି ସୂଚନା ଦେଇପାରିନ୍ତି କେହିହେଲେ ମଧ୍ୟ ଧରିପାରି ନାହାନ୍ତି । ଆଉ ଏଇ ଅବସରରେ କଣ୍ଠୁରୀ ପାନ ଦୋକାନୀର ଜଣେ କ୍ଲାସମେଟ୍ ମନ୍ତ୍ରୀଙ୍କ ଶୁଭାଗମନ ଘଟିବାକୁ ଥାଏ; ମାତ୍ର ଦିନଟିଏ ପରେ ସେଇ ସ୍ଲେଟ ସହରଟିକୁ ।

ସେଦିନ ସନ୍ଧ୍ୟାରେ କଣ୍ଠୁରୀ ବନ୍ଧୁ କଲେଜ ପିଲାଙ୍କୁ 'ମନ୍ତ୍ରୀ ମୋ କ୍ଲାସମେଟ୍' ବୋଲି ଏତେ ଗର୍ବର ସହିତ ଏଭଳି ମାର୍ମିକ ଭାବେ ଫଳେଇ ଫଳେଇ କହିଲାଗିଲା ଯେ, ପରଦିନ ସକାଳକୁ ସ୍ଥାନୀୟ ଆଇନ ଓ ଶୃଙ୍ଖଳା କର୍ତ୍ତୃପକ୍ଷଙ୍କ ମହଲରେ ବିଷୟଟିର ଗୁରୁତ୍ୱ ସମ୍ବନ୍ଧରେ ଏକ ଆଲୋଚନାର ସୂତ୍ରପାତ ହୋଇଗଲା । ସବ୍‌ଡିଭିଜନ୍ ଅଫିସର୍, ପୁଲିସ ଓ ଗୁଇନ୍ଦା ଅଫିସରମାନଙ୍କୁ ଫୋନ୍‌ରେ ଡାକି ସତର୍କ କଲାପରି କହିଲେ, "ଶୁଣୁଛି ବିରୋଧୀ ଦଳ ପକ୍ଷରୁ ଗୋଟାଏ ମସୁଧା ଚାଲିଛି । କିଏ ଗୋଟାଏ କଣ୍ଠୁରୀ ପାନଦୋକାନ କରିଛି ଜାଣନ୍ତି ? ମନ୍ତ୍ରୀଙ୍କ ଗାଡ଼ି ସେଠି ଅଟକାଇବାର ଯୋଜନା ଅଛି । ବୁଝିଲୁ ତ ! ସେ ଲୋକଟା ସ୍ୱାଗତଙ୍କୁ ମତାଉଚ ଗାଡ଼ି ଅଟକାଇବା ପାଇଁ ।"

ପୁଲିସ ଗୁଇନ୍ଦା ଅଳ୍ପ ସମୟ ଉତ୍ତାରେ କଚେରି ଛକପାଖ କଣ୍ଠୁରୀ ପାନଦୋକାନ ପାଖେ ପହଞ୍ଚିଗଲେ । ସେତେବେଳକୁ କେତେଜଣ ଯୁବକ ଦାବଲରେ ଗାତ ଖୋଳିବା ଆରମ୍ଭ କରିଦେଇଥିଲେ । ଗୁଇନ୍ଦା ପାନଦୋକାନରୁ ପାନ କିଣିବା ବାହାନାରେ ଆୟୋଜନର ସାମଗ୍ରୀଗୁଡ଼ିକ ପ୍ରତି ନଜର ପକାଇବାକ୍ଷଣି ବ୍ୟାପାରଟିକୁ ଅନୁମାନ କରିନେଲେ । ଯୁବକମାନଙ୍କ ଭିତରେ ଚାଲିଥିବା କଥାବାର୍ତ୍ତାରୁ ତାଙ୍କର ଧାରଣା ସ୍ପଷ୍ଟ ହୋଇଗଲା । କିନ୍ତୁ ଗୋଟିଏ ବିଷୟରେ ସେ ତଥାପି କିଛି ବୁଝିପାରୁନଥିଲେ । ମନ୍ତ୍ରୀଙ୍କୁ ସ୍ୱାଗତ କରିବା ପାଇଁ ତାଙ୍କ ଗସ୍ତର କାର୍ଯ୍ୟକ୍ରମ ବାହାରୁ ତତ୍ପରବେ ଯେଉଁ ସ୍ୱାଗତ ସମ୍ବର୍ଦ୍ଧନାର ଆୟୋଜନ ଆରମ୍ଭ ହୋଇଥିଲା ତାର କର୍ତ୍ତା କିଏ—କଣ୍ଠୁରୀ ? ନା ଅନ୍ୟ କେହି ? ଏହି କାରଣରୁ ପୁଲିସ ଗୁଇନ୍ଦା ଦୀର୍ଘ ସମୟ ଧରି ପାନଦୋକାନ ଆଖପାଖରେ ଘୁରାଫେରା

ବତାଇଲେ ଓ ଯୁବକମାନଙ୍କ ଅସଲ ମତଲବ ଠଉର କରିବାରେ ମନୋନିବେଶ କଲେ । ଏହା ପରେ ଯେ ସିଧା ଗୁଡ଼ିଲେ ସବ୍‌ଡିଭିଜନାଲ ଅଫିସରଙ୍କ ଅଫିସ୍‌କୁ ।

ସେଦିନ ସନ୍ଧ୍ୟା ସୁଦ୍ଧା କଣ୍ଟୁରା ପାନ ଦୋକାନଠାରୁ ମାତ୍ର ତେଇଶ ଫୁଟ ଦୂରରେ, ମେନ୍‌ରୋଡ୍ ଉପରେ, ଗୋଟିଏ ତୋରଣ ନିର୍ମାଣ କାର୍ଯ୍ୟ ବେଶ୍ କିଛି ଆଗେଇ ଯାଇ ସାରିଥିଲା । ଆଡ଼ମ୍ବରରୁ ଜଣାପଡ଼ୁଥିଲା ସେଭଳି ବ୍ୟୟବହୁଳ ଯେ ବିରୋଧୀ ଦଳ ପକ୍ଷରୁ କାହିଁକି କରାଗଲା ତାର ଉଦ୍ଦେଶ୍ୟ ଆଦୌ ବୁଝିହେଉ ନଥିଲା । କସ୍ମିନ୍‌କାଳେ କୌଣସିଠାରେ କୌଣସି ରାଜନୈତିକ ବିରୋଧୀଦଳ ପକ୍ଷରୁ ଜଣେ ମନ୍ତ୍ରୀଙ୍କ ଅଫିସିଆଲ୍ ଗସ୍ତବେଳେ ସମ୍ବର୍ଦ୍ଧନା ଦିଆଯିବା ଲାଗି ତୋରଣ ନିର୍ମାଣ କରାଯିବାର ନଜିର୍ କେଉଁଠି ଅଛି—କର୍ତ୍ତୃପକ୍ଷ ଏଇ ଚିନ୍ତାରେ ହିଁ କାଳଯାପନ କଲେ ସେଦିନ ରାତିରେ । ଏସ୍. ଡି ଓ. ଜିଲ୍ଲାପାଳଙ୍କୁ ଘନ ଘନ ଟେଲିଫୋନ୍ କରିଥିଲେ ସେ ରାତିରେ । ସରକାରୀ ଦଳର ସ୍ଥାନୀୟ ନେତୃବୃନ୍ଦ ଏମ୍. ଏଲ୍ ଏ., ଏମ୍. ପି. ମଧ୍ୟ ଜିଲ୍ଲାପାଳ, ଏସ୍. ଡି. ଓ. ଓ ପୁଲିସ୍ କର୍ତ୍ତୃପକ୍ଷଙ୍କ ସହିତ ବିରୋଧୀ ଦଳର ସନ୍ଦେହଜନକ କାର୍ଯ୍ୟକ୍ରମ ସମ୍ପର୍କରେ ତନାଘନା ଆଲୋଚନାରେ ବ୍ୟାପୃତ ରହିଲେ ବହୁତ ରାତିଯାଏ ।

ପରଦିନ ସକାଳଟୁ କଣ୍ଟୁରା ପାନଦୋକାନ ପାଖରେ ମନ୍ତ୍ରୀଙ୍କ ସମ୍ବର୍ଦ୍ଧନା ଉଦ୍ଦେଶ୍ୟରେ ନିର୍ମିତ ହୋଇଥିବା ବେସରକାରୀ ବା ବିରୋଧୀ ଦଳର ସୁସଜ୍ଜିତ ତୋରଣଟିକୁ ଘେରି ବହୁ ଯୁବକ ପ୍ରଶଂସା ଦୃଷ୍ଟିରେ ଅନାଇ ରହିଥିବାବେଳେ ଗୋଟିଏ ପୁଲିସ୍ ଜିପ୍ ଅନତି ଦୂରରେ ଅଟକିଗଲା । ଦୁଇଜଣ ଅଫିସର୍ ଜିପ୍‌ରୁ ଓହ୍ଲାଇଲେ । ସେମାନେ ଘଟଣାସ୍ଥଳରେ ଉପସ୍ଥିତ ଯୁବକମାନଙ୍କର ଅପରିଚିତ ନୁହଁନ୍ତି; ତେଣୁ ହସିହସି ସେମାନେ ଯୁବକମାନଙ୍କ ନିକଟକୁ ଅଗ୍ରସର ହେବାକୁ ଲାଗିଲେ ।

"ଆଃ, କେଡ଼େ ଚମତ୍କାର ଗେଟ୍ !" ସିନିୟର ଅଫିସର୍ ଜଣକ ତାଙ୍କର ହସଖୁସିଆ ମିଜାଜ୍ ପାଇଁ ଟାଉନ୍‌ରେ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଥିବା ହେତୁ ସମ୍ଭବତଃ ଉପସ୍ଥିତ ଯୁବକମାନଙ୍କୁ ସମ୍ବୋଧନ କରି କହିଲେ, "ଏ ତ ଦିଶୁଛି କଟକରେ ଦଶହରାକୁ ଗୁଡ଼ମାଚଉକ ଚକପାଖ ଗେଟ୍ ଭଳି । ଏତେ ଟଙ୍କା କେଉଁଠୁ ଆସିଲା ? କିଏ ଦେଲା ? ଏଠି ତ ମନ୍ତ୍ରୀଙ୍କ ସମ୍ବର୍ଦ୍ଧନା ପାଇଁ କୌଣସି ପ୍ରୋଗ୍ରାମ୍ ନାହିଁ ? କ'ଣ ପିଲାମାନେ, ଏ କା ପାଲା ଆରମ୍ଭ ହୋଇଗଲା ?"

ରାତିଯାକ ଅନିଦ୍ରା ରହି ତୋରଣ ନିର୍ମାଣ କାର୍ଯ୍ୟ ତଦାରଖ କରୁଥିବା କର୍ମୀ ଯୁବକମାନଙ୍କ ମଧ୍ୟରୁ କେତେଜଣ ପୁଲିସ୍ ଅଫିସରଙ୍କ ମତଲବ ଠଉର କରିପାରିଥିଲେ ନିଶ୍ଚୟ । ଅଫିସରଙ୍କର ହସଖୁସିଆ ପ୍ରଶ୍ନର ଜବାବ୍ ଦେବାପାଇଁ ସେମାନଙ୍କ ଭିତରୁ କେହି ପ୍ରଥମେ ଆଗଭର ନ ହେଉଥିଲେ ମଧ୍ୟ ଜଣେ ନିତାନ୍ତ ଅନିଚ୍ଛୁକଭାବରେ ଜବାବ୍ ଦେବାର ଶୁଣାଗଲା, "ମନ୍ତ୍ରୀ ଏଠି ସମ୍ବର୍ଦ୍ଧନା ନେବେ କି ନ ନେବେ ସେକଥା ଯେତେବେଳେ ଦେଖାଯିବ—ଏତେବେଳେ କାହିଁକି ?" ପଛରେ ପଛରେ ଆଉ ଏକ ସ୍ୱରରୁ

କହିତ ବନ୍ଧୁପୋଷ୍ଟ ସତେଜ ପ୍ରକାଶ ପାଇଗଲା, "ଏ ଗେଟ୍‌ର ନାଁ କଅଣ ଜାଣନ୍ତି ? ଦଶହରା ଗେଟ୍ ନୁହେଁ—ଫ୍ରେଣ୍ଡସିପ୍ ଗେଟ୍ । ଏଠି ଗୋଟାଏ ବ୍ରାଟ ବନ୍ଧୁ ମିଳନ ହବ ଆଜ—ଦେଖିବେ ଥାଆନ୍ତୁ ।"

ପୁଲିସ ଅଫିସରଙ୍କ ହସ ହସ ମୁହଁଟି ସାମାନ୍ୟ ଗମ୍ଭୀର ହୋଇଆସିଲା । ସହକର୍ମୀ ଅଫିସର୍‌ଙ୍କୁ ଅନାଇ ସେ କଅଣ ଟିକିଏ ବଡ଼ବଡ଼ ହେଲେ । ଏହା ପରେ ଦୁହେଁ ଫେରିଆସିଲେ ଜିପ୍ ପାଖକୁ ।

ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ସେଦିନ ଅପରାହ୍ଣ ଦୁଇଟାରେ ମନ୍ତ୍ରୀ ରାଜଧାନୀ ଛାଡ଼ିବାର କଥା । ବାଟରେ ବିଭିନ୍ନ କାର୍ଯ୍ୟକ୍ରମ ଅନ୍ତେ ସ୍ଥାନୀୟ ସର୍କିଟ୍‌ହାଉସ୍‌ରେ ଅନ୍ୟୂନ ଛ'ଟା ସୁଦ୍ଧା ପହଞ୍ଚିବା ପରେ ପ୍ରଥମେ କଚେରି ଛକରେ ଗାନ୍ଧି ମୂର୍ତ୍ତି ଗଳାରେ ମାଲ୍ୟଦାନ, ତାପରେ ଗୋଟିଏ କୃଷି ପ୍ରଦର୍ଶନୀ ଉଦ୍‌ଘାଟନ, ଏହାପରେ ଏକ ସାଧାରଣ ସଭାରେ ଭାଷଣ ଏବଂ ତାହା ପରେ କର୍ମୀସମ୍ମିଳନୀ ବ୍ୟତୀତ ଆଉ କେତୋଟି ଗୁରୁତ୍ୱପୂର୍ଣ୍ଣ ପ୍ରଶାସନିକ ସମସ୍ୟାର ସମାଧାନ ନିମିତ୍ତ ଡାକବଙ୍ଗଳାରେ ରାତି ଉଜାଗରରେ ଥିଲା ତାଙ୍କର ମୁଖ୍ୟ କାର୍ଯ୍ୟକ୍ରମ ।

କିନ୍ତୁ, ଚଳିତ ବର୍ଷଟି ଥିଲା ମନ୍ତ୍ରୀମାନଙ୍କ ପକ୍ଷରେ ଏକ ଅସୁବିଧାଜନକ ବର୍ଷ । ବିଗତ ଗୁଡ଼ିଏ ବର୍ଷର ଦୀର୍ଘ ସୁଷୁପ୍ତି ଉତ୍ତାରେ ବିରୋଧୀ ପକ୍ଷ ସେଇମାନଙ୍କ ମୁଣ୍ଡ ଟେକି ଚତୁଃପାର୍ଶ୍ୱକୁ ଲକ୍ଷ୍ୟ କରିବା ଆରମ୍ଭ କରିଥାନ୍ତି । ଖବରକାଗଜରେ ଆଗାମୀ ସାଧାରଣ ନିର୍ବାଚନର ସମ୍ଭାବ୍ୟ ସମୟକାଳ ସମ୍ପର୍କରେ ଏକାଧିକ ସୂଚନା ସେମାନଙ୍କର ନିଦ୍ରାଭଙ୍ଗର କାରଣ ଥିଲା ନିଶ୍ଚୟ । ତେଣୁ ମନ୍ତ୍ରୀମାନଙ୍କ ଗସ୍ତକାଳୀନ କାର୍ଯ୍ୟକ୍ରମ ସହିତ ବିରୋଧୀଦଳ ଗୁଡ଼ିକ ପକ୍ଷରୁ ସେମାନଙ୍କୁ ହଇରାଣ କରିବାପାଇଁ ନାନାବିଧ କାର୍ଯ୍ୟକ୍ରମ ସମକାଳୀନ ଭାବେ କାର୍ଯ୍ୟକାରୀ ହେବା ମଧ୍ୟ ସ୍ୱାଭାବିକ । ଏହି କାରଣରୁ ମନ୍ତ୍ରୀମାନଙ୍କ ଗସ୍ତକାଳୀନ କାର୍ଯ୍ୟକ୍ରମଗୁଡ଼ିକୁ ସୁରୁଖୁରୁରେ ପରିଚାଳିତ କରିବାପାଇଁ ସ୍ଥାନୀୟ ପ୍ରଶାସନିକ ବ୍ୟବସ୍ଥା ପକ୍ଷରୁ ପୁଲିସବାହିନୀର ଯଥେଷ୍ଟ ଉପଯୋଗ ହେତୁ ସମସ୍ତଟି ଥିଲା କହିବା ଅସୁବିଧାଜନକ ।

ସେଦିନ ସନ୍ଧ୍ୟା ପାଞ୍ଚଟା ସୁଦ୍ଧା ସହରର କେନ୍ଦ୍ରାଞ୍ଚଳଠାରୁ ଅଳ୍ପ ଦୂର କଣ୍ଡୁରି ପାନଦୋକାନ ପାଖରେ କିଛି କିଛି ଲୋକ ରାସ୍ତା କଡ଼ରେ ଦୁଇଧାଡ଼ି ଦୋକାନଗୁଡ଼ିକର ପିଣ୍ଡାରେ ଜମିବାକୁ ଆରମ୍ଭ କରିଥାଆନ୍ତି । ଘଣ୍ଟାଏ ପୂର୍ବରୁ ପୁଲିସ ଗାଡ଼ିର ଯା'ଆସ ସହିତ ଉଚ୍ଚ ପ୍ରଶାସନିକ ଅଫିସରମାନେ ମଧ୍ୟ ଅଞ୍ଚଳକୁ ପର୍ଯ୍ୟବେକ୍ଷଣ କରିବା ଲକ୍ଷ୍ୟରେ ନିଜ ନିଜ ଜିପ୍‌ରେ କିଛି ବାଟ ଆଗକୁ ଯାଇ ପୁଣି ଫେରିଆସୁଥାନ୍ତି । ଏ ସବୁ ମଝିରେ କଣ୍ଡୁରିର ବ୍ୟବସାୟ ବେଶ୍ ଜମିଲା ପରି ମନେହେଉଥାଏ । ଦିନସାରା ପାନ ଭାଙ୍ଗି ଭାଙ୍ଗି ତା ହାତ ଗୋଡ଼ରେ ଏତେ ଚୂନ, ଖଇର ଗୋଳିହୋଇଥାଏ ଯେ ଦିଶୁଥାଏ ଲାଲ୍ କଟ୍ କଟ୍—ସତେକି ରକ୍ତାକ୍ତ । କିନ୍ତୁ, ଯେତେ କାର୍ଯ୍ୟବ୍ୟସ୍ତତା ସତ୍ତ୍ୱେ ତାର ଗପ ବନ୍ଦ

ହେବାର ନୁହେଁ । ତାର ଦୃଷ୍ଟି ଥାଏ ସବୁ ଆଡ଼କୁ । ପ୍ରତ୍ୟେକଟି ଦୃଶ୍ୟ ଉପରେ ଟିପ୍‌ପଣୀ କରୁଥାଏ ସେ ଏତେ ବିଚକ୍ଷଣ ଭାବେ ଯେ, ଶୁଣିଲେ ଲୋକ ନହସି ରହିପାରିବ ନାହିଁ । କିନ୍ତୁ ଏସବୁ ସହିତ ଗୋଟିଏ ପ୍ରଶ୍ନ ମଝିରେ ମଝିରେ ପଚାରି ଦେଉଥାଏ କଣ୍ଟ୍ରୁଷ୍ଟ ତାର ପରିଚିତ ବା ଅପରିଚିତ ଯେ କେହି ଲୋକଙ୍କୁ—

"ସେ କିଏ ଜାଣ ?"

"କିଏ ?"

"ଏଇ ଯେ ଆସୁଛନ୍ତି···ମୋ କ୍ଲାସ୍‌ମେଟ୍ ସେ ! ଗାଡ଼ି ଅଟକିବ ନାହିଁ ?"

ସମୟ ପାଖେଇ ଆସୁଥାଏ । ଜନ ସମାଗମ ବେଶ୍ ବଢ଼ିଗଲାଣି । ରାସ୍ତାର ଦୁଇ କଡ଼ରେ ଲାଠିଧାରୀ ପୁଲିସ୍ ଠିଆହୋଇଗଲେଣି । ଯାନବାହନ ନିୟନ୍ତ୍ରଣ କରିବା ପାଇଁ ରାସ୍ତା ଅବରୋଧ କରୁଥିବା ଜନତାକୁ ଆଡ଼େଇ ଗାଡ଼ି ଯିବା ପାଇଁ ରାସ୍ତା ସଫା କରୁଥାଏ ପୁଲିସ । ସେଇ ଅବସରରେ ତୋରଣ ନିକଟରେ ସମବେତ ହୋଇଥିବା ଯୁବକମାନଙ୍କ ପକ୍ଷରୁ ଗୋଟିଏ ଧ୍ୱନି ଶୁଣାଗଲା ପ୍ରଥମଥର ପାଇଁ, "ଗାଡ଼ି ଅଟକିବ—ଜରୁର୍ ଅଟକିବ !"

ସେହି ସମୟରେ ମନ୍ତ୍ରୀଙ୍କ ଆଗମନକୁ ଅପେକ୍ଷା କରୁଥିବା ଜିଲ୍ଲାପାଳଙ୍କୁ କେହି ଜଣେ ଖବର ଦେଲା—"ବିରୋଧୀଦଳ ପକ୍ଷରୁ ପ୍ରଚୁର ସୋଡ଼ାବୋତଲ ଆଜି ସଂଗ୍ରହ କରାଯାଇଛି ସହରର ବିଭିନ୍ନ ଦୋକାନରୁ । ସେମାନେ ମନ୍ତ୍ରୀଙ୍କ ଗାଡ଼ି ଅଟକାଇବେ । ଯଦି ଗାଡ଼ି ନଅଟକେ ତେବେ ଭୟଙ୍କର କାଣ୍ଡ ଘଟିଯିବାର ଆଶଙ୍କା ।"

"କିନ୍ତୁ କାହିଁକି ?" ଜିଲ୍ଲାପାଳ ଗଲା ଚବିଶ ଘଣ୍ଟା ଭିତରେ ବାରମ୍ବାର ଏଇ ପ୍ରଶ୍ନଟିକୁ ପଚାରିଥିଲେ ତାଙ୍କର ଅଧସ୍ତନ ସମସ୍ତ ସଂପୃକ୍ତ ପ୍ରଶାସନିକ ଅଫିସର୍ ସମେତ ପୁଲିସକୁ । ତାର ଉତ୍ତରରେ ସେ ଯାହା ଶୁଣିଥିଲେ ସେଥିରେ ତାଙ୍କର ବିସ୍ମୟ କ୍ରମଶଃ ପ୍ରଗାଢ଼ ଓ ଧୈର୍ଯ୍ୟଚ୍ୟୁତ ଓ ଶେଷରେ କ୍ରୋଧରେହିଁ ପର୍ଯ୍ୟବସିତ ହୋଇଯାଇଥିଲା ।

"ଦି ଫୁଲସ୍ !" ପାଖରେ ଠିଆହୋଇଥିବା ଜନୈକ ଅଫିସରଙ୍କୁ ଇଶାରା ଦେଇ ଜିଲ୍ଲାପାଳ ନିକଟକୁ ଡାକିଲେ ଓ ଲୋକଟି ନଇଁପଡ଼ିବାରୁ ତାର କାନରେ କହିଲେ "ସେ ପାନଦୋକାନୀକୁ ଆରେଷ୍ଟ କରିନେବା ଉଚିତ ଥିଲା । ବର୍ତ୍ତମାନ ହେବ ?"

"ନୋ ସାର୍ !" ଅଫିସର ଜଣକ ଏଥର ଜିଲ୍ଲାପାଳଙ୍କ କାନ ପାଖକୁ ନିଜ ମୁହଁ ନେଇ ଅତି ନରମ କଣ୍ଠରେ କହିଲେ. "ପଟଣୋସ୍ଥଳରୁ ମୁଁ ବର୍ତ୍ତମାନ ଆସିଲି । ତା ଘରପାଖେ ଲୋକ ଘେରି ରହିଛନ୍ତି ।"

"ବଟ୍ ହୁ ଆର୍ ଦେ···କିଏ ସେଗୁଡ଼ାକ ?"—ଜିଲ୍ଲାପାଳ ଥରିଉଠିଲା ଗୁପି ନ ପାରି ରୁକ୍ଷ କଣ୍ଠରେ ପଚାରିଲେ ।

"ଦି ଅପୋଜିସନ୍···ବିରୋଧୀ ଦଳର ଏ ଏକ ଅଦ୍ଭୁତ ଚକ୍ରାନ୍ତ ସାର୍ !" ନଇଁ ପଡ଼ିବା ଅବସ୍ଥାରୁ ସଳଖେଇ ଯାଇ ଅଫିସର୍ ପୁଣି ଥରେ ସ୍ଥାନୀୟ ସମସ୍ୟା ଉପରେ ଟିପ୍‌ପଣୀ କରିଚାଲିଲେ ।

"ଓ କେ, ଷ୍ଟପ୍ ଇଟ୍"...ଜଣ୍ଟାପାଲ ଅନ୍ୟ ଅଡ଼କୁ ମୁହଁ ବୁଲେଇ ଦେଇ ବସିବାର ଉପକ୍ରମ କରୁଥିଲେ ଓ ସେଇ ଅବସରରେ ସେ ଶୁଣିବାକୁ ପାଇଲେ—

"ଆଜ ଫାୟାରିଂ ଅର୍ଡର ପର୍ଯ୍ୟନ୍ତ କଥା ଯାଇପାରେ, ସାର୍ ! ଦ ଅପୋଜସନ୍ ଅଲ୍‌ମୋଷ୍ଟ ବେର୍ସ୍ ଇଟ୍ ପାସେଟିକାଲ୍...ତାଙ୍କର ଦରକାର ଫାୟାରିଂ !"

ଏହା ପରେ ଘଟଣାସ୍ଥଳ ପରିଦର୍ଶନ କରିବା ପାଇଁ ଜଣ୍ଟାପାଲ ନିଜେ ବାହାରିଗଲେ । ହାତ ଘଣ୍ଟାକୁ ଅନାଇଁ ସେ ଦେଖିଥିଲେ ସନ୍ଧ୍ୟା ଛ' ବାଜିବାକୁ ଆଉ ମୋଟେ ପାଞ୍ଚ ମିନିଟ୍ । କିନ୍ତୁ ଏଥି ପୂର୍ବରୁ ସେ ଖବର ପାଇସାରିଥିଲେ ମନ୍ତ୍ରୀଙ୍କ ଗସ୍ତକ୍ରମ ପ୍ରାୟ ଏକଘଣ୍ଟା ଡେରି ହୋଇଯାଇପାରେ ।

ପ୍ରାୟ ସାତଟା ପୁଣି ସହର ଉପକଣ୍ଠରେ ଗୋଟାଏ ପରେ ଗୋଟାଏ ହୋଇ ପ୍ରାୟ ଦଶବାରଟା କାର୍ ଓ ଜିପ୍ ଗଛ ଅନ୍ଧାରରୁ ନଜରକୁ ଆସିବାମାତ୍ରେ ଗୋଟିଏ ବିରାଟ ବିସ୍ଫୋରଣର ଶବ୍ଦ ଶୁଣାଗଲା । କିନ୍ତୁ ସେଟା ଥିଲା ସ୍ୱାଗତ ଧ୍ୱନି । ବିବାହରେ ବରର ଆଗମନୀ ସମ୍ବାଦ କନ୍ୟାପକ୍ଷକୁ ବମ୍ବାଜି ଧ୍ୱନିଦ୍ୱାରା ଶୁଣାଇଦେଲା ପରି ଏକ ଆଗୁଆ ସମ୍ବାଦ ମାତ୍ର । କିନ୍ତୁ ସେ ଶବ୍ଦ ଶୁଣାଯିବା ପରେ ତୋରଣ ପାଖରେ ରାସ୍ତା ଜାମ୍ କରୁଥିବା ପୁଲିସ୍‌ଙ୍କ ସମସ୍ୟା ହଠାତ୍ ଜଟିଳତର ହୋଇଉଠିଲା ପରି ମନେହେଲା ।

ଦଳେ ଯୁବକ ହଠାତ୍ ପୁଲିସ୍ କର୍ଡ଼ନ ଭାଙ୍ଗି ମଝିକୁ ପଳାଇ ଆସିଲେ ଓ ଧ୍ୱନି ଆରମ୍ଭ କରିଦେଲେ—

"ବନ୍ଧୁ ମିଳନ ଜରୁର୍ ହବ ।"

ମନ୍ତ୍ରୀଙ୍କ ଗାଡ଼ି ଜରୁର ଅଟକିବ ।"

ଉପସ୍ଥିତ ଦର୍ଶକମାନଙ୍କ ମଧ୍ୟରେ ପ୍ରଥମେ ଏଇ ଧ୍ୱନିଯୋଗୁ ଗୋଟିଏ ଉଚ୍ଛ୍ୱସିତ ହାସ୍ୟରୋଳ ସୃଷ୍ଟି ହୋଇଗଲା । ଏପରିକି ଏ ହାସ୍ୟରୋଳରେ ଲାଠିଧାରୀ ପୁଲିସ୍‌ମାନେ ମଧ୍ୟ ସହଯୋଗ କଲାପରି ପରସ୍ପର ମୁହଁକୁ ଚାହାଁଚାହିଁ ହୋଇ ହସିପକେଇଲେ । କିନ୍ତୁ ମୁହୂର୍ତ୍ତକ ଭିତରେ ପରିସ୍ଥିତି ସମ୍ପୂର୍ଣ୍ଣ ବଦଳିଗଲା । ମନ୍ତ୍ରୀଙ୍କ ଲାଲ୍‌ବତୀବାଲା ଗାଡ଼ି ଆଗେ ଆଗେ ଆସୁଥିବା ପୁଲିସ୍‌ଗାଡ଼ିଟି ସିଧା ରାସ୍ତା ଅବରୋଧକାରୀ ଯୁବକଙ୍କଠାରୁ ଇଞ୍ଚେ ତଫାତ୍‌ରେ ଅଟକିଗଲା । ପଛେ ପଛେ ମନ୍ତ୍ରୀଙ୍କ ଗାଡ଼ି । ତା ପଛକୁ ଆହୁରି ଆହୁରି ଗାଡ଼ି । ଏଇ ଅବସରରେ ମନ୍ତ୍ରୀଙ୍କ ଗାଡ଼ିର ଦୁଇପାଖେ ଦୁଇଦଳ ଲୋକ ରୁପି ହୋଇଗଲେ । ସେମାନେ ଚିତ୍କାର କରୁଥାନ୍ତି । କଅଣ କହୁଥାନ୍ତି କିଏ ଜାଣେ ? କିନ୍ତୁ ମନ୍ତ୍ରୀଙ୍କ କାନରେ ବାରମ୍ବାର ଗୋଟାଏ ଦୁଇଟା ପଦ ବାଜୁଥାଏ—ବନ୍ଧୁ ମିଳନ...କ୍ଲାସ୍‌ମେଟ୍...କଣ୍ଟ୍ରାକ୍ଟ...ଏହିପରି । ମନ୍ତ୍ରୀ ବିମୂଢ଼ ଅବସ୍ଥାରେ ଗାଡ଼ିରୁ ବାହାରିପଡ଼ିବାକୁ ଡୋର୍ ଲକ୍‌ଟାକୁ ଖୋଲିଦେବାକୁ ହାଣ୍ଡେଲ୍ ଉପରକୁ ହାତ ନେଉଥିଲେ । କିନ୍ତୁ ଗାଡ଼ି ଉପରେ ହଠାତ୍ ଗୋଟାଏ ଢେଲା ବା ବୋତଲ ପଡ଼ିବାର ଶବ୍ଦ ଶୁଣି ତାଙ୍କ ହାତ ଅଟକିଗଲା ।

ସେତେବେଳକୁ ଲାଠି ଚାର୍ଜ ଗୁଳି ହୋଇଯାଇଥାଏ । କିନ୍ତୁ ତାର କୌଣସି ପ୍ରଭାବ ମନ୍ତ୍ରୀଙ୍କ ଗାଡ଼ିର ସ୍ୱାଣୁତା ଉପରେ କାର୍ଯ୍ୟକାରୀ ନହେଉଥିବା ଦେଖି ମନ୍ତ୍ରୀ ଆତଙ୍କିତ ହୋଇ-ଉଠିଲେ । ତାଙ୍କ ନିକଟରେ ବସିଥିବା କେହି ଜଣେ ପୁଲିସ ଓ ମ୍ୟାଜିଷ୍ଟ୍ରେଟ୍‌ଙ୍କ ନିର୍ବୋଧତା ପ୍ରତି ଆଙ୍ଗୁଳି ପ୍ରଦର୍ଶନ କରି ଅତି ଉଚ୍ଚ ସ୍ୱରରେ ଚିତ୍କାର କରି ଉଠିଲେ, "ଫାୟାର୍ ! ଫାୟାର୍...ୟୁ ଇଡ଼ିଅଟ୍‌ସ୍ ! ଓପନ୍ ଫାୟାର୍—କ୍ୱିକ୍ !"

ଏହାର କେଇ ମୁହୂର୍ତ୍ତ ପରେ ସତକୁ ସତ ପୁଲିସ୍ ବନ୍ଧୁକର ଆୱାଜ୍ ଶୁଣାଗଲା । ସଙ୍ଗେ ସଙ୍ଗେ ରାସ୍ତା ମଧ୍ୟ ସଫା ହୋଇଗଲା । ମନ୍ତ୍ରୀଙ୍କ ଗାଡ଼ି ସାମନା ପୁଲିସ୍ ଜିପ୍ ଦ୍ରୁତ ଗତିରେ ଆଗେଇଗଲା । ପଛେ ପଛେ ମନ୍ତ୍ରୀଙ୍କ ଗାଡ଼ି ।

ଡାକବଙ୍ଗଳାରେ ପହଞ୍ଚି ମନ୍ତ୍ରୀ ଜିଲ୍ଲାପାଳଙ୍କୁହିଁ ପ୍ରଥମେ ଖୋଜିଲେ । କିନ୍ତୁ କେହି ଜଣେ ଖବର ଦେଲା—ଜିଲ୍ଲାପାଳ ଗୁରୁତରଭାବେ ଆହତ । ଏହାପରେ ମନ୍ତ୍ରୀଙ୍କ ପାଖକୁ ସମ୍ବାଦ ପହଞ୍ଚିଲା ଯଥାରୀତି । ଫାୟାରିଂରେ ପାଞ୍ଚଜଣ ଗୁରୁତର ଆହତ ଓ ଜଣେ ଲୋକର ମୃତ୍ୟୁ ଖବର ନେଇ ଅବଶେଷରେ ପହଞ୍ଚିଲେ ଏସ୍. ଡ଼ି. ଓ. ।

"ସେଇ ଲୋକଟା ଅବଶେଷରେ ମଲା, ସାର୍ !" ଏସ୍. ଡ଼ି. ଓ. ଗମ୍ଭୀରଭାବେ ସମ୍ବାଦଟି ପରିବେଷଣ କରିବା ସହିତ ମନ୍ତବ୍ୟ ଦେଲେ, "ସବୁ ନାଟର ଗୋବର୍ଦ୍ଧନ—ଆପଣଙ୍କ କ୍ଲାଇମେକ୍ସ ସେ କୁଆଡ଼େ ! କିନ୍ତୁ ଅପୋଜିସନ୍‌କୁ ଗୋଟିଏ ବଡ଼ ଭିକ୍ଟ୍ରି ଦେଇ ଗଲା ସେ ଷ୍ଟୁପିଡ୍ ଲୋକଟା ସାର୍ ।"

ଅପୋଜିସନ୍‌ର ଭିକ୍ଟ୍ରି ମନ୍ତବ୍ୟଟା ମନ୍ତ୍ରୀଙ୍କ ହୃଦୟକୁ ଶୂଳ ପରି ବିଦ୍ଧ କରିଦେଲା, କିନ୍ତୁ ସେ ବହୁ କଷ୍ଟକରି ପ୍ରକୃତିସ୍ଥ ହେଲେ । ପରେ ପରେ ତାଙ୍କ ମନରେ ପୁନର୍ବାର ସେଇ ପ୍ରଶ୍ନଟା ମୁଣ୍ଡ ଟେକିଲା—"କିଏ ? ମୋ କ୍ଲାଇମେକ୍ସ ? କ'ଣ ତା ନାଁ ?" ମନ୍ତ୍ରୀ ପୁନର୍ବାର ନିଜର ବିସ୍ମୟ ପ୍ରକାଶ କଲେ । ଗତ ଚବିଶ ଘଣ୍ଟା ଭିତରେ ବହୁବାର ବହୁ ସରକାରୀ ବେସରକାରୀ ସୂତ୍ରରୁ ଏଇ ସମ୍ବାଦଟା ପାଇ ମଧ୍ୟ ସେ ଆଦୌ ଠଉର କରି ପାରୁନଥିଲେ ଲୋକଟାକୁ ବା ତା ସମ୍ପର୍କୀୟ କୌଣସି ସୂତ୍ରକୁ ।

ସେଦିନର କୃଷି ପ୍ରଦର୍ଶନୀ, ସାଧାରଣ ସଭା ଓଗେରେ ମନ୍ତ୍ରୀଙ୍କ ଯାବତୀୟ କାର୍ଯ୍ୟକ୍ରମ ବାତିଲ ହୋଇଯାଇଥିଲା । ଗଗନ ପବନ ଗୋଟିଏ ଚିତ୍କାରରେ କ୍ରମଶଃ ମୁଖରିତ ହୋଇଉଠୁଥିଲା ସେ ରାତିରେ—"ଶହୀଦ କଣ୍ଡୁରୀ ସ୍ୱାଇଁ ଅମର ରହେ...ଶହୀଦ କଣ୍ଡୁରୀ ସ୍ୱାଇଁ ଅମର ରହେ !" ଅପୋଜିସନ୍‌ର ଭିକ୍ଟ୍ରି ପ୍ରୋସେସନ୍ ମାର୍ଚ୍ଚ କରୁଥିଲା ।

କିନ୍ତୁ କିଏ ଏ କଣ୍ଡୁରୀ ସ୍ୱାଇଁ ଯେ ଶହୀଦ ହେଇଗଲା ?

ସାରା ରାତି ମନ୍ତ୍ରୀ ଗଭୀର ଚିନ୍ତାରେ ବୁଡ଼ିରହିଲେ ।

ପରଦିନ ବଡ଼ ବଡ଼ ଅକ୍ଷରରେ ଶହୀଦ କଣ୍ଡୁରୀ ସ୍ୱାଇଁଙ୍କ ଗଭୀର ବେଦନାଦାୟକ ମୃତ୍ୟୁ ଓ ସରକାରଙ୍କ ନିର୍ମମ ପାଶବିକ ପ୍ରଶାସନିକ କଳର ଦମନଲୀଳାର ସବିଶେଷ ବିବରଣୀ ସହ ପୁଲିସ ଗୁଳିର ଶିକାର ହୋଇଥିବା ବ୍ୟକ୍ତିର ଫଟୋ ଖବରକାଗଜ-

ମାନଙ୍କରେ ପ୍ରକାଶିତ ହୋଇଗଲା । ବିଶେଷତଃ ଅପୋଜିସନ୍‌ର ଖବରକାଗଜରେ ଦୁର୍ଘଟଣାକୁ ବହୁ ପ୍ରକାରେ ଅତିରଂଜିତ କରିଯାଇ ସରକାର ବିରୁଦ୍ଧରେ ଏକ ବିରାଟ ଆନ୍ଦୋଳନ ପାଇଁ ଆହ୍ୱାନ ଦିଆଯାଇଥିଲା ।

ମନ୍ତ୍ରୀ ନିରାପଦରେ ରାଜଧାନୀକୁ ଫେରିଯାଇଥିଲେ ଓ ତାଙ୍କ ଟେବୁଲ୍ ଉପରେ ରଖାଯାଇଥିବା ଖବରକାଗଜରୁ ସର୍ବପ୍ରଥମେ ଶହୀଦ କଣ୍ଟୁରି ସ୍ୱାଇଁଙ୍କର ଫଟୋଗ୍ରାଫ୍‌ଟିକୁ ଦେଖିବାକୁ ପାଇଲେ । ଫଟୋଟିକୁ ଦେଖି ମନ୍ତ୍ରୀ ଚମକିଉଠିଲେ । କିନ୍ତୁ ଏହାପରେ ହଠାତ୍ ଗୋଟାଏ ହୋ ହୋ ହସରେ ମନ୍ତ୍ରୀଙ୍କ ରେସିଡ଼େନ୍‌ସିଆଲ୍ ଅଫିସ୍‌ଟି ଥରହର ହୋଇଗଲା । ପରମୁହୂର୍ତ୍ତରେ ଗମ୍ଭୀର ନିସ୍ତବ୍ଧତା ଭିତରେ ପୁଣି ସବୁଆଡ଼ ଡୁବିଗଲା ।

ଅତ୍ୟନ୍ତ ଗମ୍ଭୀର ଓ ଅମାୟିକ କଣ୍ଠ ସ୍ୱରଟିଏ ସେଇ ନିସ୍ତବ୍ଧ ଗର୍ଭରୁ ପୁଣି ଆତ୍ମପ୍ରକାଶ କଲା । ପାଖରେ ଠିଆହୋଇଥିବା ପି.ଏ. ଙ୍କୁ ସମ୍ବୋଧନ କରି ମନ୍ତ୍ରୀ କହିଲେ, "ଲେଖ—ଯାହା କହୁଛି ଲେଖ ।"

ପି.ଏ. କାଗଜ କଲମ ସଜାଡ଼ୁ ସଜାଡ଼ୁ ମନ୍ତ୍ରୀ କହିଚାଲିଲେ—"ସ୍ୱର୍ଗତ କଣ୍ଟୁରି ସ୍ୱାଇଁ ତାଙ୍କ ବାଲ୍ୟକାଳରେ ଜଣେ ନିତାନ୍ତ ନିର୍ବୋଧ ବାଳକରୂପେ ଆଖ୍ୟାୟିତ ହୋଇଥିଲେ । ଆମେ ସାଙ୍ଗରେ ଏକାଠି ପଢୁଥିଲୁ । ସେ ମୋର ପ୍ରାଥମିକ ସ୍କୁଲ୍‌ର କ୍ଲାସ୍‌ମେଟ୍ । ସେତେବେଳେ ଦେଶରେ ସ୍ୱାଧୀନତା ସଂଗ୍ରାମ ଚାଲିଥିଲା । ବଡ଼ବଡ଼ ଲୋକେ ସ୍ୱାଧୀନତା ସଂଗ୍ରାମରେ ମିଶିଥିଲେ । କେତେକ ଫାଶୀ ପାଉଥିଲେ । ପୁଲିସ୍ ଗୁଳିରେ ମରୁଥିଲେ । ସେମାନଙ୍କୁ ଶହୀଦ କୁହାଯାଉଥିଲା । ଥରେ ଆମ କ୍ଲାସ୍‌ରେ ମାଷ୍ଟ୍ରେ ଗୋଟିଏ କବିତା ବୁଝାଉଥିଲେ । କି କବିତା ମୋର ମନେନାହିଁ । କିନ୍ତୁ ସେଥିରେ ଶହୀଦ ଶବ୍ଦ ଥିଲା । ତାହା ଆମ ପକ୍ଷେ ଦୁର୍ବୋଧ ଥିଲା । ତେଣୁ ମାଷ୍ଟ୍ରେ ଶହୀଦ ଭଗତ ସିଂ ଶହୀଦ କ୍ଷୁଦିରାମ, ବାଘା ଯତୀନ୍‌ଙ୍କ ଜୀବନୀ ଠିକେଠିକେ କହିଗଲେ । ଏସବୁ କହି ସାରିଲା ପରେ ମାଷ୍ଟ୍ରେ ଆମ ସମସ୍ତଙ୍କୁ ଅନାଇଲେ । ଆମେ ଦେଖିଲୁ ମୋଟା ମୋଟା ଚଷମା କାଚ ଭିତରେ ବୁଢ଼ା ମାଷ୍ଟ୍ରେ କାହିଁକି କେଜାଣି କାନ୍ଦୁଥାନ୍ତି । ଆମକୁ କିନ୍ତୁ କାନ୍ଦ ମାଡ଼ୁ ନଥାଏ । ତଥାପି ଆମେ ସମସ୍ତେ ଭେ ଭେ ହୋଇ କାନ୍ଦିଲୁ । ମାଷ୍ଟ୍ରେ ନିଜ ଆଖିରୁ ଲୁହ ପୋଛିଲେ । ଆମେ ବି ଆଖିରୁ ଲୁହ ପୋଛିଲୁ । ଏହାପରେ ମାଷ୍ଟ୍ରେ ଆମ ଆଡ଼କୁ କଟକଟ କରି ଚାହିଁଲେ । ସମସ୍ତଙ୍କ ଆଡ଼କୁ ଆଙ୍ଗୁଠି ଦେଖେଇ ପଚାରିଲାଭଳି ପଚାରିଲେ, ଏଥର କହ, କିଏ ତମଭିତରୁ ଶହୀଦ ହେବ ? କହ କହ—କିଏ କିଏ ଶହୀଦ ହେବାକୁ ଇଚ୍ଛା କରୁଛ କହ । ହାତ ଟେକ—ଆମେ ଡରିଗଲୁ । କେହି ହାତ ଟେକିଲୁନାହିଁ । କିନ୍ତୁ ନା, ସବୁ ପଛବେଞ୍ଚରେ ଜଣେ ପିଲା ହାତ ଟେକିଥିଲା । ସେ ଏଇ କଣ୍ଟୁରି ସ୍ୱାଇଁ !"

"କାରଣ ଆଜ୍ଞା ?" ପି.ଏ. ଚମକି ପଡ଼ିଲା ପରି କାଗଜରୁ ମୁହଁଟେକି ଚାହିଁଲେ ।

କିନ୍ତୁ ସେତେବେଳକୁ ମନ୍ତ୍ରୀ ସମ୍ପୂର୍ଣ୍ଣ ଅନ୍ୟମନସ୍କ ହୋଇ ଝରକା ବାହାରକୁ ଅନାଇ ରହିଥିଲେ ।

———

# ହିଚ୍‌ଲର୍

ହିଟ୍‌ଲର୍ ଓରଫ୍ ହିଞ୍ଚ୍ଚୁ ଗୋଟିଏ ପ୍ରକାଶିଆ ଥିଲା । ତା' ବାପା ଜଣେ ସାଧାରଣ ଗୃହୀ, କିନ୍ତୁ ହିଞ୍ଚୁର ଗୃହବାସରେ ମନ ନଥିଲା । ଗାଁ ମାଇନର ସ୍କୁଲରୁ ପାସ୍ କରିଲେ ପରେ ହିଞ୍ଚୁ ଦିନାକେତେ ଗାଁ ପାଖ ବଜାରରେ ଦଣ୍ଡେସକାଳେ ବୁଲାବୁଲି କରିବାର ଦେଖାଗଲା । ତାର ଅଳ୍ପଦିନ ପରେ ହିଚ୍ଚୁକୁ ଲୋକେ ଦେଖିଲେ ଦଳେ ଲଫଙ୍ଗା ଟୋକାଙ୍କ ମେଳରେ । ଏ ଟୋକା ଦଳର ମୁଖ୍ୟକାମ ସେତେବେଳେ ଥିଲା ବଜାର ଛକ ଉପରେ କୌଣସି ଚା'ଦୋକାନରେ ବସି ବସ୍‌ଯାତ୍ରୀଙ୍କ ଗୃହଚଳଣ ଉପରେ ଦୃଷ୍ଟି ରଖିବା ଓ ସ୍ଥାନୀୟ ରାଜନୀତି ଚର୍ଚ୍ଚା କରିବା । ବସ୍‌ଯାତ୍ରୀଙ୍କ ଉପରେ ଟୋକାଦଳର ଆଖି ରହିବାର କାରଣ ସାଧାରଣତଃ ଏକ ନୁହେଁ, ବହୁବିଧ । ଆବହମାନକାଳରୁ ମଣିଷ ପରିଚିତ ମୁହଁ ଛଡ଼ା ଅପରିଚିତ ମୁହଁ—ସ୍ତ୍ରୀ ପୁରୁଷ ନିର୍ବିଶେଷରେ—ଦେଖିବାକୁ ସର୍ବଦା ଲାଳାୟିତ । ଏଭଳି ଅସଂଖ୍ୟ ଅପରିଚିତ ମୁହଁ ଦେଖିବାର ସୁଯୋଗ ବସ୍‌ଷ୍ଟାଣ୍ଡ, ରେଲଷ୍ଟେସନ, ସହର ବଜାର ବା ଗାଁହାଟ ହେବା ତ ସ୍ୱାଭାବିକ । କିନ୍ତୁ ହିଞ୍ଚୁ ଓ ତା' ଦଳର ଟୋକାମାନେ କେବଳ ଅପରିଚିତ ମଣିଷଙ୍କ ମୁହଁ ଦେଖିବାକୁ ସେତେଦୂର ଲାଳାୟିତ ନଥିଲେ । ସେମାନେ ଏକ ନିର୍ଦ୍ଦିଷ୍ଟ ଅପରିଚିତ ମଣିଷ ସମ୍ପ୍ରଦାୟର ଅନ୍ୱେଷଣରେ ରହିଲାପରି ଲାଗୁଥିଲା ।

'ହିଞ୍ଚୁବାବୁ' ବଜାରର ଚା' ଦୋକାନି ଟୋକାମାନଙ୍କର ଫୁସ୍‌ଫାସ୍ କଥାବାର୍ତ୍ତା ଓ ଆଖିଠାରକୁ ବହୁଦିନ ନଜର କଲା ପରେ ଦିନେ ପ୍ରକାଶ୍ୟରେ ନିଜର ସନ୍ଦେହ ପ୍ରକାଶ କରିଥିଲା ଏହିପରି କେତୋଟି ପ୍ରଶ୍ନରେ, "କାହାକୁ ଅନିଷା କରିଚ କିଓ ? ଫେମିଲିପ୍ଲାନିଂର ଲୋକଙ୍କୁ ?"

"ନାହିଁ—" ହିଞ୍ଚୁ ତା ଦଳର ଟୋକାଙ୍କୁ ଆଖିମାରିଦେଲା ।

ଅଳ୍ପ ସମୟ ପରେ ଟୋକାମାନେ ଚା' ଦୋକାନ ଛାଡ଼ି ଉଠିଗଲେ ।

ଏହାର ଦିନ କେତେକ ଉତ୍ତାରେ ଗାଁରେ ଏକ ଖଣ୍ଡିଆ ପିଣ୍ଡା ସଂଲଗ୍ନ ଘୁଲଘର ଭିତରୁ କଲରାଉଣା ଶୁଣି ଲୋକେ ବିସ୍ମିତ ହେଲେ । କେହି କେହି ପ୍ରକାଶ୍ୟରେ ପ୍ରଶ୍ନ କଲେ—"କିରେ ହିଞ୍ଚୁ, ଏଟା କ'ଣ ବାଜୁଚି କିରେ ?"

'ଟେପ୍‌ରେକର୍ଡ଼ର !' ହିଞ୍ଚୁର ଜବାବ ସ୍ପଷ୍ଟ ଓ ବ୍ୟବସାୟିକ, "କିଣିବ ? ଗୋଟା ହଜାରେ ଟଙ୍କା । ଭଲ ଜାପାନୀ ଜିନିଷ । ବଡ଼ କଷ୍ଟରେ ମିଳିଲା । ରଘୁ ସ୍ମଗ୍‌ଲର୍ ବିକୁଚି ସାଢେ ସାତଶ'ରେ । କିନ୍ତୁ ତା ପଛୁ ପାଇବା ମୁସ୍କିଲ ।"

ହଚ୍ଚୁର ଟେପରେକର୍ଡ଼ର, ଟ୍ରାଞ୍ଜିଷ୍ଟର ରେଡ଼ିଓ, କ୍ୟାମେରା, ଟେରିଲିନ୍ ଶାଢ଼ି, କସ୍‌ମେଟିକସ୍ ଓ ଅନ୍ୟାନ୍ୟ ବସ୍ତୁ ଜଗତର ଆକର୍ଷଣ କ୍ରମଶଃ ଗାଁର ଧନୀ-ଦରିଦ୍ର ସବୁ ଶ୍ରେଣୀର ଲୋକଙ୍କୁ ଅକ୍ଷମ କରି କେଉଁ ଅଦୃଶ୍ୟ କ୍ଷେତ୍ରମାନଙ୍କ ବ୍ୟୂହର ଅନ୍ତର୍ଗତ ହେଲା ତାହା କେହି ଜାଣିବାକୁ ଇଚ୍ଛା କରି ନଥିଲେ ଆଉ ।

ହଚ୍ଚୁର ନାମମାହାତ୍ମ୍ୟ ବାପଟି ବିଚରା ପୁଙ୍ଗପର ଲିପ୍ତ ରହୁଥାଏ ଗୃହବାସରେ । ବାଟଘାଟରେ କେହି ଯଦି ତାକୁ ପଚାରେ, "ସାଉଡ଼େ ! ପୁଅ ତ ଖୁବ୍ ପାରିଗଲା—ଆଉ କାହିଁକି ଏ କଷ୍ଟ ଏ ବୟସରେ ହୋ ?" ତେବେ ସାଉଡ଼ଙ୍କଠୁଁ ପ୍ରାୟ ଏହିପରି ଜବାବ ମିଳୁଥିଲା—"ପାରିଲା ଆଉ କ'ଣ ? ପିଲାଟା କେମିତି ଶୁଖିଗଲାଣି ଦେଖୁନା । କ'ଣ କମି ଧାଁଧପଡ଼ ଛେଚକୁଟ ବଣିଜ କାମ ! ବଣିଜ ବେପାର ବଡ଼ ହଗିଧା କାମ । କ'ଣ ଗୃହବାସ କ ବୁଝ କାଟ !"

ହଚ୍ଚୁର ବାପା ସାମାନ୍ୟ ଗୃହାଶ୍ରିତ ହେଲେ ମଧ୍ୟ ତାର ବୁଝାମଣା କିଛି କମ୍ ନୁହେଁ । ତା ପୁଅ ହଚ୍ଚୁ ଯେ କୌଳିକ ଗୃହବାସ ଛାଡ଼ି ଯୋଡ଼ ପୂରେଇଛି ବ୍ୟବସାୟ, ବାଣିଜ୍ୟ କ୍ଷେତ୍ରରେ—ଏଥିରେ ସାଧାରଣ ଲୋକଙ୍କ ପରି ଅସନ୍ତୁଷ୍ଟ ନୁହେଁ ସେ, ବରଂ ଖୁସି । ଯୁଗ ପରିବର୍ତ୍ତନ ସାଥିରେ ପାଦ ମିଳେଇ ଚାଲିବାକୁ ଇଚ୍ଛା କରିଛି ସେ ତା ନିଜ ଯୁବାକାଳରୁ । ଏହି କାରଣରୁ ତ ଗଲା କୋଡ଼ିଏ-ବାଇଶି ବର୍ଷ ତଳେ ହଚ୍ଚୁ ଜନ୍ମବେଳକୁ, ଏକୋଇଶିଆ ଦିନ ପିଲାର ନାଁଦିଆବେଳକୁ ଝାଙ୍କ ଝୁଣ୍ଟେଇ ଦେଇଥିଲା ସେ ଗାଁର ପୁରୋହିତ ପଣ୍ଡିତଙ୍କ ସାଥିରେ । ପୁରୋହିତ କୋଷ୍ଠୀ ଦେଖି ପିଲାଟିର ନାଁ ହରିହର ରଖିବାକୁ କହୁଥିଲେ । କିନ୍ତୁ ସେକଥା ନୋହିଲା । ନିଜ ପୁଅ ନା ହରି, ରାମ, ଶାମ, ଗୋବିନ୍ଦ ପରିବର୍ତ୍ତେ ହିଟ୍‌ଲର୍ ରହିବ ବୋଲି ଜିଦ୍‌ଧରି ବସିଗଲା ହଚ୍ଚୁର ବାପ ।

ପଣ୍ଡିତେ ପୂଜା ଅଧାରେ ତମତମ ହୋଇ ପ୍ରଶ୍ନକଲେ—'ଆହେ ହିଟ୍‌ଲର୍ ଗୋଟାଏ କ ନାଁ ? କୋଉ ଠାକୁରଙ୍କ ନା ଏ ? ଏ ଶବ୍ଦର ଅର୍ଥ କଣ ? କ ଧାତୁରୁ ଜାତ ଏ ଶବ୍ଦ ?'

'ଆଜ୍ଞା ମୋର ଧାତୁରୁ ଜାତ ପରା—' ହଚ୍ଚୁର ବାପ ବୋକା ବନେଇ ଛାଡ଼ିଲା ସେଦିନ ପଣ୍ଡିତ ବିଚାରାକୁ ସବୁରି ଆଗରେ !

ପଣ୍ଡିତେ ଗରଗର ହେଲେ । ହଚ୍ଚୁର ନାଁ ହିଟ୍‌ଲର୍ ରହିଲା ସେଦିନୁଁ, ଯଦିଚ କୋଷ୍ଠୀମତେ ହଚ୍ଚୁ ଆଉ ହରିହର ଏକ ଓ ଅଭିନ୍ନ ବୋଲି ପଣ୍ଡିତେ ବୁଝାଇଦେଲେ ସମସ୍ତଙ୍କୁ ।

ଅବଶ୍ୟ ହଚ୍ଚୁର ନାଁ ହିଟ୍‌ଲର୍ ହବାରେ ହଚ୍ଚୁ ବାପର ଆଧୁନିକ ରୁଚି ଏକାନ୍ତ ଆଧୁନିକ—ଯା ଭାବ ନଥିଲେ କେହି । କାରଣ ସେତେବେଳକୁ ପୃଥିବୀରେ ହିଟ୍‌ଲର୍, ଚର୍ଚ୍ଚିଲ, ଷ୍ଟାଲିନ୍ ଭଳି ଅନେକ ବିଦେଶୀ ଲୋକଙ୍କ ନାଁ ଏପରି କି ବିଦେଶର ଜାଗା ନାଁ—ଜର୍ମାନୀ, ଜାପାନ ପ୍ରଭୃତି ଦେଶର ଗାଁ ଗଣ୍ଡାକୁ ପଶି ଆସିଥିଲା ବହୁ ଆଗରୁ । ହଚ୍ଚୁ

ଜନ୍ମର ଚଉଦ-ପନ୍ଦରବର୍ଷ ତଳୁ ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ପ୍ରକୋପ ଦେଖିଛି ସାରିଥିଲା ଏ ପୃଥିବୀ । ହିଟ୍ଟୁ ଏଇ ମହାଯୁଦ୍ଧ ପରବର୍ତ୍ତୀ ଯୁଗର ମଣିଷ—ଅନ୍ତତଃ ଏତିକି ବେଶ୍ ଭଲ ବୁଝାପଡ଼େ ତା ନାଁରୁ ।

ରଘୁ ସ୍ମଗଲର୍ ସାଥିରେ ହିଟ୍ଟୁର ପରିଚୟ କେଉଁସୂତ୍ରରେ କିଭଳି ଘଟିଥିଲା କେଜାଣି ? ତେବେ ବର୍ଷ କେତୋଟା ଭିତରେ ରଘୁ ସ୍ମଗଲର୍ ନା ପରିବର୍ତ୍ତେ ହିଟ୍ଟୁର ନାଁ ଶୁଣାଗଲା ବହୁ ତୁଣ୍ଡରୁ । ଅବଶ୍ୟ ହିଟ୍ଟୁ କେବଳ ସ୍ମଗଲିଂ ବ୍ୟବସାୟରେ ମୁହଁ ପୋତି ପଡ଼ିଗଲା ନାହିଁ ବେଶିଦିନ । କ୍ରମଶଃ ପକ୍କା ବ୍ୟବସାୟ ବାଣିଜ୍ୟ କ୍ଷେତ୍ରକୁ ଗୋଡ଼ ପୂରେଇଲା ସେ । ବର୍ଷ କେତୋଟା ଭିତରେ ହିଟ୍ଟୁର ସିମେଣ୍ଟ ଏଜେନ୍‌ସି, ସାର ଏଜେନ୍‌ସିର ସାଇନବୋର୍ଡ଼ ଗାଁ ପାଖ ବଜାର ଛକ ଉପରେ ମୁଣ୍ଡଟେକି ଚାହିଁବାର ଦେଖାଗଲା ସଭିଁର ମୁହଁକୁ ।

ହିଟ୍ଟୁର ବାପ ତଥାପି ହଳଧରି ଯା'ଆସ କରୁଥାଏ ନିଜର କ୍ଷେତବାଡ଼ିକୁ । ତେବେ ସେ ଆଉ ଆଜିକାଲି ନାମମାତ୍ର ଗୃହୀତଲେ ନାଁ ଲେଖାଉନାହିଁ ଗ୍ରାମପଞ୍ଚାୟତ ଅଫିସ ଖାତା ବହିରେ । କିମ୍ବା ଗାଁର ସେ ପୁରୁଣା ଟିଣ୍ଡିଆ ପିଣ୍ଡାଘର ଖଣ୍ଡିକ ନୁହେଁ ଆଉ ତାର ବାସସ୍ଥାନ, ଯେଉଁଠି ବର୍ଷ କେତୋଟା ତଳେ ନିଆଁ କରି କଳଗାଉଣା ଶୁଣି ଲୋକେ ବସି ରହୁଥିଲେ । ଏବେ ସେଠି ମସ୍ତ କୋଠା, ଦୋ'ମହଲା କୋଠା । ଆଉ ଦିନରାତି ଚବିଶଘଣ୍ଟାର ସେ ଘର ଛାତ ଉପରେ ଖଞ୍ଜା ହୋଇଥିବା ଗୋଟାଏ ଚୁଙ୍ଗାରୁ ଶୁଣାଯାଉଚି କେତେ ରକମ ଗାଉଣା । ଖଣ୍ଡମଣ୍ଡଳ କମ୍ପୁଚି ସେଥିରେ ।

ହିଟ୍ଟୁର ସାଙ୍ଗସାଥୀ ଆଉ ନାହାନ୍ତି ସେ ପୂର୍ବର ଅଭେକା ଟୋକା ପଞ୍ଝାକ । ଏବେ ହିଟ୍ଟୁକୁ ଦେଖିଲେ ବି. ଡ଼ି. ଓ., ଥାନାବାବୁ, ଡାକ୍ତର, ଏମ୍. ଏଲ୍. ଏ, ପର୍ଯ୍ୟନ୍ତ ସଲାମ କରନ୍ତି ଦୂରରୁ । ସେମାନଙ୍କୁ ନିଜ ଘରକୁ ନିମନ୍ତ୍ରଣ କରିଆଣେ ହିଟ୍ଟୁ । ଖିଆପିଆ ଖୁସିବାସି ବଢ଼ିଉଠ ହେଉ ହେଉ ବଢ଼େ ମଣିଷ ମଣିଷଙ୍କ ସଦ୍‌ଭାବ । ଜମେ ଭାବଦୋସ୍ତି । ଏ କ୍ଷେତ୍ରରେ ହିଟ୍ଟୁର ବନ୍ଧୁବାନ୍ଧବଙ୍କ ଭିତରେ ବି. ଡ଼ି. ଓ., ଥାନାବାବୁ, ଡାକ୍ତର, ଏମ୍. ଏଲ୍. ଏ. ଗଣା ହେବାଟା ନୂଆକଥା କିଛି ନୁହେଁ ନିଶ୍ଚୟ ।

କିନ୍ତୁ ଏସବୁ ସତ୍ତ୍ୱେ ହିଟ୍ଟୁର ଶତ୍ରୁମାନେ ମଧ୍ୟ ଏ ଭିତରେ ସଂଖ୍ୟାରେ କିଛି ଯେ ନ ବଢ଼ିଛନ୍ତି ନୁହେଁ । ବହୁବର୍ଷ ତଳେ ବଜାର ଉପରେ ଯୋଉ ଚା' ଦୋକାନରେ ବସି ହିଟ୍ଟୁ ଓ ତାର ପୁରୁଣା ସାଥୀମାନେ ଛକରେ ଅଟକୁଥିବା ଯାନବାହାନ ବସ୍‌ଗୁଡ଼ାକୁ ଅନୁସନ୍ଧାନ କରି ସେଥିରୁ ଅପରିଚିତ ରଘୁ ସ୍ମଗଲର ବା ତା' ସମ୍ପ୍ରଦାୟର ଲୋକଙ୍କ ସ୍ୱରୂପ ଅନ୍ୱେଷଣରେ କାଳାତିପାତ କରୁ ଲେ, ସେଇ ଚା' ଦୋକାନୀର ଚାହାଣି ଏବେ ମଧ୍ୟ ବିରକ୍ତିକର ମନେହୁଏ ହିଟ୍ଟୁକୁ ।

"ଆଜ୍ଞା, ଏ ଶଳା କପିଳା ନାୟକ ଚା'ଦୋକାନୀକୁ କେମିତି ଜବତ କରି ହ'ବା ନାହିଁ ଟିକିଏ !" ଦିନେ ହିଟ୍ଟୁ କଥା ଲହସରେ ପକେଇଦେଲା କାନରେ ଏଠିକି ଥାନା ବାବୁଙ୍କର ।

ଆଶ୍ଚର୍ଯ୍ୟ ହେଲେ ଆନାବାବୁ । ପଚାରିଲେ, "କଣ ଆଜ୍ଞା ? ଆପଣ ଡରୁଛନ୍ତି ଗୋଟାଏ ସାମାନ୍ୟ ଚା'ଦୋକାନୀକୁ ?"

ହିଟୁ ହସିଦିଏ । ଆନାବାବୁଙ୍କ ଆଡ଼କୁ ବୋଡଲେ ପୁରୁଣା ସୁଗଲ ମାଲ ଠେଲା ଦନ୍ତ ଦନ୍ତ ଜିଭ କାମୁଡ଼ି ପକେଇ କହେ, "ଡର ମୋର ଏକା ଆପଣମାନଙ୍କୁ, ନହେଲେ ଆଉ କାହାକୁ ?"

ଏହାର ଦିନ କେତେକ ପରେ କପିଲା ନାହାକ ତାର ବହୁଦିନର ପୁରୁଣା ଚା' ଦୋକାନର ଧଡ଼ା ନହୁଠେଇ ଦିନାକେତେ କୁଆଡ଼େ ଯେ ଉଭାନ ହେଲା କେହି ଜାଣି ପାରିଲେ ନାହିଁ । ହିଟୁର ଲୋକେ ବଜାର ଉପରେ କହିବୁଲିଲେ—"ଶଳା କପିଲା ନାହାକ ନଢ଼ିବାକୁ ମୁଣ୍ଡ ପାଉ ନାହିଁ ଯେ ତାଳପକାଉଥିଲା ଏକାବେଳକେ ହିଟ୍‌ଲର ସାଥିରେ । ଗଲା, ଏଥର ଗୁଣପାଞ୍ଜି ବି ଗଲା । ଏଥର ବାହାର, ଆଉ କିଏ ଅଛ କେଉଁଠି ନଢ଼ିବାକୁ ଯେବେ ଇଚ୍ଛା ହିଟ୍‌ଲର ସାଥିରେ—ଆସ ବାହାର ।"

କେହି ବାହାରିଲେ ନାହିଁ ।

ଦିନ କେତେଟା ଅଜାତଶତ୍ରୁ ଅବସ୍ଥାରେ ହିଟ୍‌ଲର ନିଜର ନୂଆ କରି କିଣା ଯାଇଥିବା ଡିଜେଲ ଜିପ୍‌ରେ ବସି ବୁଲିବୁଲି କରିବାର ଦେଖାଗଲା ।

କିନ୍ତୁ ବେଶିଦିନ ନୁହେଁ । ଦିନେ ହିଟୁର କେହି ଜଣେ ବିଶ୍ୱସ୍ତ ଅନୁଚର ଧଇଁସଇଁ ହୋଇ ଆସି ପହଞ୍ଚିଲା ଆଉ ଖଣ୍ଡେ ମୋଡ଼ା ମକଚା ଛପା ଅକ୍ଷରର କାଗଜ ତା ହାତକୁ ବଢ଼େଇ ଦେଇ ଅତ୍ୟନ୍ତ ଭୟଶଙ୍କିତ ସ୍ୱରରେ କହିଲା, 'କଥା ସରିଗଲା –"

ହିଟୁ ଚମକିପଡ଼ିଲା । ଲେଖାଜୋଖା କାଗଜ ଖଣ୍ଡକୁ କଅଣ ମନେକଲା କେଜାଣି ଆଗ ହାତରୁ ଛିଞ୍ଚାଡ଼ି ପକେଇଲା । ସେଇଠୁ ଡାକପକେଇଲା—ମାର ମାର, ପିଟ ପିଟ ।

ଘରର ଚାକରବାକର ପିଲାଟିଲା ଯେ ଯେଉଁଠି ଥିଲେ ଧାଇଁ ଆସିଲେ । ସମସ୍ତେ ମନେକଲେ—ସାପ ପଶିଛି ନିଶ୍ଚେ । ତେଣୁ ଚାକରମାନେ ଠେଙ୍ଗାବାଡ଼ି ଧରି ଧାଇଁ ଆସିଲେ ବାବୁଙ୍କ ଶୋଇବାଘର ପର୍ଯ୍ୟନ୍ତ । କିନ୍ତୁ ସେତେବେଳକୁ ହିଟୁ ଅହେତୁକ ଭୟ କମ୍ପିତ କମିଯାଇ ତହିଁରୁ ପ୍ରଚଣ୍ଡ କ୍ରୋଧାଗ୍ନି ଜାତ ହୋଇସାରିଥାଏ । ଚାକର-ବାକରମାନଙ୍କୁ ଛନଅଁ କରିଦେଲା ଭଳି ହିଟୁ ସେତେବେଳକୁ କାଳିଶୀ ପରି ନାଚୁଥାଏ । ତା' ପାଟିରୁ ଫେଣ ବାହାରିବା ଦେଖି ଘରଲୋକ ସମସ୍ତେ ମନେକରିନେଲେ ଯେ ସାପ ନିଶ୍ଚେ ଦଂଶି ସାରିଲାଣି ବାବୁଙ୍କୁ । ହିଟୁର ବୁଢ଼ା ବାପ ତା'ର ଗୃହୀସୁଲଭ ଢଙ୍ଗରେ ପାଞ୍ଚଣ ବେଣ୍ଟିଏ ଧରି ଘରର ଅନ୍ଧକନ୍ଦି ଖୋଜୁଥାଏ ସାପଟା ଗଲା କୁଆଡ଼େ ବୋଲି । ପିଲାପିଲିଙ୍କ କାନ୍ଦବୋବାଳି ଉଠିଗଲାଣି ସେତେବେଳକୁ କାହିଁ କେତେ ଉଚ୍ଚକୁ ।

ହଠାତ୍ ପହଞ୍ଚିଗଲେ ବି. ଡ଼ି. ଓ ବାବୁ ।

ହିଟୁର ରଡ଼ି ଉପରମହଲରୁ ବେଶ୍ ଶୁଭୁଥାଏ ଗାଁଦାଣ୍ଡକୁ । ବି. ଡ଼ି. ଓ ଗାଡ଼ିରୁ ଓହ୍ଲାଉ ଓହ୍ଲାଉ କିଏ ଜଣେ ଧାଇଁଆସି କୁଣ୍ଢେଇ ପକାଇଲା ତାଙ୍କୁ । ଖବର ଦେଲା—

ବାବୁଙ୍କୁ ସର୍ପ ଦଂଶିଦେଲା ଅଛନ୍ତି ! ପୂତ୍‌ନା ଗୃହିଣୀ ମୂହୂର୍ତ୍ତିକେ ଠଉର କରିନେଲେ ବ୍ୟାପାରଟା ।

"ଉଠିବେ, କାଗଜଖଣ୍ଡକୁ ଏତେ ଡର ଯାହାର ସେ କ ନେତା ହବ ଏ ଦେଶର !" କହୁ କହୁ ଶିଡ଼ ପାହାଚରେ ଉଠିଆସିଲେ ବ. ଡ଼. ଓ. ବାବୁ ହୁଣ୍ଟର ବେଡ଼୍‌ରୁମ୍‌କୁ ସିଧାସଳଖ ।

"ଦେଖେଁଇ ସେ କାଗଜ, କଅଣ ବାହାରିଚ ସେଥିରେ ପଢ଼େ ମୁଁ—" ହୁଣ୍ଟକୁ ତଟସ୍ଥ କରିଦେଇ ବ. ଡ଼. ଓ. ବାବୁ କାଗଜଖଣ୍ଡକୁ କେଲା ସାପ ଧରିଲା ମାଗେଁ ଉଠେଇ ନେଲେ ତଳୁ ଓ ସାପର ବିଷଦାନ୍ତ ପରୀକ୍ଷା କଲାପରି ପରୀକ୍ଷା କରିନେଲେ ଆଖିପିଛୁଡ଼ାକେ ।

"ଧାତ୍—" କାଗଜଟାକୁ ଧଣ୍ଡସାପ ଭଳି ଅତ୍ୟନ୍ତ ବେଖାତିରରେ ଫିଙ୍ଗି ଦେଉଦେଉ ପରିବାରର ପୁରୁଣା ବନ୍ଧୁ ବ. ଡ଼. ଓ. ବାବୁଙ୍କ କଣ୍ଠରୁ ଯେଉଁ ଭାଷା ବାହାରିଲା ତାକୁ ଅନ୍ୟ କେହି ବୁଝନ୍ତୁ ନବୁଝନ୍ତୁ ହୁଣ୍ଟ ବୁଝିପାରିଲା ଖୁବ୍ ।

ଘଟଣାଟା ସେପରି ବିପଜ୍ଜନକ ନୁହେଁ, ଦମ୍ଭବନ୍ତଃ ଏତିକି ବୁଝେଇଦେବାପାଇଁ ବ.ଡ଼.ଓ. କହିଲେ—"ହୁଣ୍ଟବାବୁ, ଅପଣ ଜଣେ ଲକ୍ଷପତି । ଏଇ ସାମାନ୍ୟ କାଗଜରେ ନାଁ ବାହାରିଚ ବୋଲି ଏତେ ଭୟ ଆପଣଙ୍କର ? ଆପଣ ଜାଣନ୍ତି ଏ ଦେଶର କୋଟିପତି ବିରଲା, ଡାଲମିଆଁଙ୍କ ନାଁରେ କି କି କଥା ନ ବାହାରେ ଦେଶର ବଡ଼ ବଡ଼ କାଗଜରେ ! ଦେଶର ବଡ଼ ବଡ଼ ନେତାଙ୍କୁ ନେଇ କି କି କୁତ୍ସିତ କଥା ନ ବାହାର କରୁଚନ୍ତି ହିତ ଖବରକାଗଜବାଲାଏ ତାଙ୍କ କାଗଜରେ । ଏଟା କିବା କାଗଜ କିବା ଖବର ଏ—ଏଥିରେ ଏତେ ଗ୍ଳାନିଆ ଆପଣ ! ଧାତ୍, ହବ ନାହିଁ ଅଉ ।"

ହୁଣ୍ଟର ଫେଣ୍ଡିଆ ମୁହଁରେ ଇଷତ୍ ଆଶ୍ୱସ୍ତିର ହସ ଦେଖାଗଲା । କିନ୍ତୁ ସେ କିଛି ନୁହେଁ । ଲୋକଟାର ନିଃଶ୍ୱାସ ମାରିବା ଢଙ୍ଗରୁ ଯାହା ଧରିହେଉଥିଲା ସେଥିରୁ ବେଶି କିଛି ଭଲ ଜଣାଗଲା ନାହିଁ ।

ରାତି ବଢ଼ିଲା । ଘର ଲୋକେ ଶୋଇବାକୁ ବାହାରିଲେ । ବ. ଡ଼. ଓ ଅଉ ଟିକିଏ ଡେରି ପର୍ଯ୍ୟନ୍ତ ରହି ବାହାରିଗଲେ । ହୁଣ୍ଟ କିନ୍ତୁ ସେଦିନ ରାତି ଗୋଟାକଯାକ ଶେଯରେ ପଡ଼ି ଛଟପଟ ହେଲା ।

ଏହା ପରେ ପ୍ରାୟ ହପ୍ତାକ ପର୍ଯ୍ୟନ୍ତ ନାନା ବ୍ୟବସାୟ ଧନ୍ଦା ସେନ ହୁଣ୍ଟ ବ୍ୟସ୍ତ ରହିଲା । ଆଠଦିନ ଦିନ ବଡ଼ ଭୋର୍‌ରୁ ହୁଣ୍ଟ ମୁହଁରୁ ପୁଣି ଫେଣ ବାହାରିବା ଦେଖାଗଲା । କିନ୍ତୁ ପୂର୍ବପରି ହୁଣ୍ଟର ଗର୍ଜନ ତର୍ଜନ କେହି ଶୁଣିଲେ ନାହିଁ । ଲୋକଟାର ସ୍ୱର ଗଲା ହପ୍ତାକ ଭିତରେ ବହୁତ ବଦଳି ଯାଇଥିଲା । କଥା କହିଲାବେଳେ ଗୋଟାଏ ଅଦ୍ଭୁତ ଆଓ୍ୱାଜ୍ ବାହାରୁଥିଲା ତା ତଣ୍ଟିରୁ । ସତେ କି ବିଷଜ୍ୱାଳାରେ ତଣ୍ଟି ପରଦା ଫାଟି ଫାଟି ଯାଉଥିଲା ଦିନକୁ ଦିନ ।

ହସ୍ତାବ ତଳର ବିଷପ୍ରକୋପ କମୁନକମୁଣ୍ଡ ତା' ଉପରେ ଆଉ ଏକ ଡୋଜ୍ ଆସି ପଡ଼ିଲା ସେଦିନ ବଡ଼ ଭୋର୍‌ରୁ ।

"ଆଜ୍ଞା ! ଗାଧୁଆ ଗୁଠରେ ମାଇପେ କ'ଣ କୁହାକୁହି ହଉଚନ୍ତି ଜାଣିଲେଣି ?" ସେଦିନ ସକାଳୁ ଗୋଧି ପଲେଇ, ହଟ୍ଟେଲର ନମ୍ବର ଓ୍ୱାନ୍ ଲୋକ, କାନରେ କହିଦେଇ ଗଲା ତାର, "ଧର୍ମ ଲୋକେ ଧର୍ମକୁ ନ ଡରିଲେ କଅଣ ହେବ—ତାଙ୍କର କାଗଜକୁ ଡର । ଆପଣ ଏତେ କଅଣ କରୁଚନ୍ତି ମ କାଗଜକୁ । ଲୋକେ ହସୁଚନ୍ତି ।"

"ଲୋକେ ହସୁଚନ୍ତି ?" ହଟ୍ଟେଲର ତର୍ଣ୍ଣି ପେଡ଼ିରୁ ଅବିକଳ ଏକ ଗୋଖର ସାପର ସୁ ସୁ ଉଳି ଶୁଣାଗଲା ଗୋଟାଏ ସ୍ୱର, "ଖବରକାଗଜ ଧରିଚି ଧର୍ମକୁ—ନାହିଁ ? ସେଥିରେ ଯାହା ବାହାରେ ସବୁ ସତ, ସବୁ ଧର୍ମ ? ସେ ଲୋକଟା ଏଇ ହସ୍ତାକ ଭିତରେ ମୋଠୁ କେତେ ନେଇ ସାରିଲଣି ଜାଣ ?"

ଗୋଧି ପଲାଇ, ହଟ୍ଟେଲର ନମ୍ବର ଓ୍ୱାନ୍ ଲୋକ, ସେଇ ମାତ୍ର ଖବର ପାଇଲା ତା' ମାଲିକର ଅସଲ ଦୁର୍ଶ୍ଚିନ୍ତା ବିଷୟରେ । ହଟ୍ଟେଲର ବଦ୍‌ନାମକୁ ଡରେ ନାହିଁ, ଡରେ ବଦ୍‌ନାମର ଚଢ଼ା ବଜାରଦରକୁ—ଏତକ ବୁଝିଗଲା ପରେ ଗୋଧି ପଲେଇ ମାଇଲା ଗୋଟାଏ ହେଣ୍ଡି । କହିଲା—"ରେଟ୍ ଖସିପଡ଼ିବ ଆଜ୍ଞା ! ଆପଣ ଜାଣୁ ଜାଣୁ ବଢ଼ୋଉଚନ୍ତି ସବୁ ଦର । ଏ ଗାଁଗଣ୍ଡାରେ ସାଚ ସିମେଣ୍ଟର ଭାଉ ସିନା ବଢ଼ିବ, ଗୁହିଦା ଅଛୁ ତାର, ଖବର ଦର ବଢ଼େଇଲେ କାହିଁକି ଆପଣ ? କିଏ ଗୁହୁଁଚି ଏ ଗାଁରେ କାହାର ଖବର ?"

ଗୋଧି ପଲେଇ ମୁଣ୍ଡରେ ହାତ ଦେଇ ବସିପଡ଼ିଲା । କହିଲା, "ଆରେ ବାପରେ ! ଟଙ୍କା ଶହେରେ ଯାହା ପାଆନ୍ତେ ଆପଣ ଦେଇ ପକାଇଲେ ପାଞ୍ଚ ହଜାର !"

ହଟ୍ଟେଲରର ଫେଣ୍ଟିଆ ମୁହଁରେ ହସ୍ତାକ ଅନ୍ତରରେ ଦ୍ୱିତୀୟବାର ଦେଖାଗଲେ ଇଷତ୍ ହସର ଗାର ।

"ଖବର ଦର ଝସେଇ ପାରିବୁ ଗୋଧି ?" ପୂର୍ବର ଖସଖସିଆ ସ୍ୱରରେ ପଗ୍ଭରିଲା ହଟ୍ଟେଲର, ଆଉ ତର୍ଣ୍ଣି ଝାଡ଼ି କହିଲା ବି, "କିନ୍ତୁ ଖବରଦାର, ଏ ଝବରର ଭାଉ ଯେମିତି ନ ବଳ ପଡ଼େ ପୂର୍ବ ଭାଉକୁ । କାମ ଏପରି ହେବ ଯେମିତି ଫାଇଲ ଉପରେ କାମ ହୁଏ ସରକାରୀ ଅଫିସ୍‌ରେ—ପରିଷ୍କାର ।"

ଗୋଧି ପଲେଇ ଉଠି ବସିଲା । ଯିବା ପୂର୍ବରୁ ମାଲିକଙ୍କୁ ଜୁହାର ହୋଇ କହିଲା, "ଗୋଧି ପଲେଇର ସବୁ କାମ ଝଟପଟ । ଖାଲି ଥାନାବାବୁଙ୍କୁ ସମ୍ଭାଳିବେ ଆପଣ ।"

ସେଦିନ ଗୋଟି ପହରକେ ଭିତରେ ଗୋଧି ପଲେଇ ଅତି ନିଷ୍ଠାପର ଭାବରେ ତାର କର୍ତ୍ତବ୍ୟ ସମ୍ପାଦନ କରିଥିବା ସମ୍ବାଦ ପହଞ୍ଚିଲା ହଟ୍ଟେଲର୍ କାନରେ । କିନ୍ତୁ ପରଦିନ ସକାଳକୁ ଗୋଧି ପଲେଇ ଧଇଁସଇଁ ହେଇ ଆସି ପହଞ୍ଚିଗଲା ଆଉ କହିଲା, "ଆଜ୍ଞା, ଗାଧୁଆ ଗୁଠରେ ମାଇପେ କ'ଣ ଏମିତି କଥାବାର୍ତ୍ତା ହଉଚନ୍ତି !"

"କଅଣ ?" ଚମକପଡ଼ିଲ ହିଟ୍‌ଲର୍ ।

"କହୁଚନ୍ତି ନଇବାଲରେ ମାଇପୀଟାଏ କାଲ୍ ରାତରେ ମରିପଡ଼ିଚ । ତା' ବାହୁଯାକ କଣ୍ଡିଆ ଦଣ୍ଡିଆ । ହେଣ୍ଟାବାଘ ସମ୍ଭବ ଖାଇଚ । ହେଲେ ଗୋଟାଏ ଅସୁବିଧା ଲକ୍ଷଣ ଦେଖାଯାଉଚ ।"

"କଅଣ ?" ହିଟ୍ଲୁର ପାଟି କଡ଼ରେ ଅଳ୍ପ ଟିକିଏ ଫେଣ ଦେଖାଗଲାଣି ହେଉଚେବେଳକୁ ।

"ବେସ୍ତ ହୁଅନ୍ତୁ ନାହିଁ ଆଜ୍ଞା ।" ହିଟଲର୍‌ର ପାଟିରେ ଫେଣ ଦେଖି ନିଜ ପାଟି ପୋଛି ପକେଇଲା ଗୋଧି ତା ହାତ ନେଡ଼ାରେ, ଆଉ କହିଲା, "ଝାଲ୍ ଆନା ବାବୁଙ୍କୁ ଧଇଲେ ହବନାହିଁ ଆଜ୍ଞା—ଟିକିଏ ଧରିପକାନ୍ତୁ ଡାକ୍ତରଙ୍କୁ ଆଉ ସରପଞ୍ଚଙ୍କୁ । ମାଇପେ କହୁଚନ୍ତି ହେନ୍ତାବାଘ ମଣିଷ ମାରେଟ ସିନା, ଦାଲ୍ ଭରିବ ନାହିଁ ମଲା ମଣିଷର ଅଥାନଥାନରେ ।"

"କଅଣ ? ଡାଲ୍ ? ଅଥାନରେ ?"

"ଆଜ୍ଞା ! ସେଇଥିପାଇଁ ତ କହୁଚ କଥା ଅଇଚୁକା ରହିଲାଣି ଯାଇ ଡାକ୍ତରଙ୍କ ହାତରେ । ଯଦି ଡାକ୍ତର ନଶୁଣିବେ ତେବେ ସରପଞ୍ଚ, ନହେଲେ ତାଙ୍କ ଓପରକୁ..."

"ଗ୍ରେପ୍‌ବେ ।" ହିଟଲର୍‌ର ଗୋଟାଏ ଗୁସୁଡ଼ାରେ ଗୋଧି ପଲେଇ ଗଡ଼ିପଡ଼ିଲା ଚଉକି ଉପରୁ । ମୂର୍ଖ ଅପରିଚ୍ଛନ୍ନ ଲୋକଟାକୁ ଆଉ ଗୋଟାଏ ଘୁଷି ଦେବା ପାଇଁ ହିଟ୍ଲୁର ହାତ ମୁଠା ମୁଠା ହେଇଆସୁଥିଲା । କିନ୍ତୁ ସେତିକିବେଳେ ପହଞ୍ଚିଗଲା ବି.ଡ଼ି.ଓ.ଙ୍କ ଜିପ୍ । ଜଣେ ଲୋକ ଦଉଡ଼ି ଆସି କହିଲା—

"ପଳାଅ । ଶୀଘ୍ର ପଳାଅ । ଖବର ପହଞ୍ଚିଲାଣି—ତେଣେ ଦଣଖଣ୍ଡ ପଞ୍ଚାୟତରେ ମିଟିଂ ବସିଗଲାଣି । ଶୁଣାଯାଉଚ ହଜାର ହଜାର ଲୋକ ଦଳ ହେଉଚନ୍ତି—ମାଡ଼ି ଆସିବେ କୋଉକ୍ଷିଣା ।"

ହିଟ୍ଲୁ ଗୋଟାଏ ଖେପାରେ ଆଗ ବଳିଗଲା ସେ ଲୋକଟାକୁ ଆଉ ଅଖି ପିଛୁଡ଼ାକେ ଯାଇ ବସିପଡ଼ିଲା ଜିପ୍‌ରେ ବି. ଡ଼ି. ଓ.ଙ୍କର । ଗାଁ ରାସ୍ତାରେ ଧୂଳି ଉଡ଼େଇ କୁଆଡ଼େ ଅଦୃଶ୍ୟ ହୋଇଗଲା ସେ ଗାଡ଼ିଟା । ଖବର ଅନୁଯାରେ ଦଣଖଣ୍ଡ ପଞ୍ଚାୟତର ଉତ୍ତ୍ୟକ୍ତ ଲୋକମାନେ ଠେଙ୍ଗାବାଡ଼ି, ସାବଲ, ଗଇଁତି ଧରି ହିଟ୍ଲୁ ସୁଗଲର୍‌ର କୋଠାକୁ ଯେତକୁ ଯେତ ଘେରାଉ କଲାବେଳକୁ ଯେତନ ସନ୍ଧ୍ୟା ନୁହେଁ, ତା'ପରଦିନ ଯାଧୁଆବେଳେ ହେଇ ଯାଇଥିଲା ।

ଯାହା ଘଟିଲା ତାକୁ ସ୍ଥାନୀୟ ଶିକ୍ଷିତ ଲୋକେ କହିଲେ, "ଫଲ୍ ଅଫ୍ ବର୍ଲିନ—ବର୍ଲିନର ପତନ ।" କେହି କେହି ମଧ୍ୟ କହିଲେ—ଫ୍ରେଞ୍ଚ୍ ରଭଲ୍ୟୁସନ ବା ଅକ୍ଟୋବର ରଭଲ୍ୟୁସନ ।

କିନ୍ତୁ ସ୍ଥାନୀୟ ଘଟଣାର ଚାପ ଯେତେ ଐତିହାସିକ ଗୁରୁତ୍ୱପୂର୍ଣ୍ଣ ହେଲେ ମଧ୍ୟ ଇତିହାସ ସ୍ଥାନରେ ଯେତେ ନଥାଏ ସେତେ ଥାଏ କାଳରେ । ଇତିହାସର ଏଇ କାଳ ପକ୍ଷପାତିତାକୁ ସମସ୍ତଙ୍କ ଅପେକ୍ଷା ସମ୍ଭବତଃ ବେଶି ଧରିପାରୁଥିଲା ହଞ୍ଚୁ ସ୍ମଗଲର ନିଜେ ।

ସେଦିନ ଜଣେ ଗାଉଁଲି ଖବରକାଗଜର ପ୍ରତିନିଧିଙ୍କ ପତ୍ନୀଙ୍କ ରେପ୍ ଓ ମର୍ଡର କେସ୍ ମକଦ୍ଦମା ସଂକ୍ରାନ୍ତରେ ହଞ୍ଚୁକୁ ଗିରଫ କରାଯାଇ ଜେରାକରାଯାଉଥାଏ ଥାନାରେ ।

ଗୋଡ଼ ଉପରେ ଗୋଡ଼ ପକେଇ କପେ ଚା ପିଇବା ଅବସ୍ଥାରେ ଲୋକଟିର ଷ୍ଟେଟମେଣ୍ଟ ରେକର୍ଡ଼ କରିଚାଲିଥାନ୍ତି ଥାନାବାବୁ—

"ମୋର ଜାତକ ନାମ ହରିହର । କିନ୍ତୁ ମତେ ସମସ୍ତେ ଚିହ୍ନନ୍ତି କିଏ ମୁଁ । ମୁଁ ହରିହର ନୁହେଁ—ହିଟଲର୍ । ମତେ ସବୁ ଲୋକେ ଏ ନାରେ ନଚିହ୍ନିଥାନ୍ତେ, ତେବେ ଅଇଛୁକା ମୋ ବାପ ଘର ନାମମାତ୍ର ଚାଷୀଟିଏ ହେଇଥାନ୍ତି ମୁଁ । ଆମ ସମୟରେ ଗାଁର ଧନୀ ଜମିଦାର ପିଲାମାନେ ଖୁବ୍ ଫେସନ୍ କରୁଥିଲେ । ନୂଆ ନୂଆ ଢଙ୍ଗରେ ଜାମାକୁର୍ତ୍ତା ପିନ୍ଧୁଥିଲେ । ଆମର ଜାମାକୁର୍ତ୍ତା ନ ଥିଲା । ବୋଧହୁଏ ସେଇଥିପାଇଁ ବାପା ମୋର ମତେ ଏଇ ନାଁଟା ପିନ୍ଧେଇ ଦେଇଥିଲେ—ହିଟ୍‌ଲର । ହିଟ୍‌ଲର କିଏ ମତେ ଜଣାନାହିଁ । କିନ୍ତୁ ମୁଁ ଜାଣେ ସେ ଗୋଟାଏ ସମସ୍ତ । ବଡ଼ ବଢ଼ିଆ ସମସ୍ୟ । ପୂର୍ବର ଧନୀ ମରୁଥିଲେ । ତାଙ୍କ ଧନ, ତାଙ୍କ କ୍ଷମତା ମାଟିରେ ପଡ଼ିଲାମାତ୍ରେ ଯେ ଗୋଟେଇନେଲା ସେ ଉଠିଲା ଉପରକୁ । ଆମ ଗାଁଠୁ ଚାଳିଶ ମାଇଲ ଦୂରରେ ସେତେବେଳେ ତିଆରି ହେଉଥିଲା ବନ୍ଦର । ରଘୁ ସ୍ମଗଲର୍ ସେତେବେଳେ ଉଠୁଥାଏ ଉପରକୁ । ମୁଁ ପାଠପଢ଼ା ଛାଡ଼ିଦେଲି । ଧରିଲି ମୋ ଗୁରୁ ରଘୁ ସ୍ମଗଲର୍‌ର ପଯ୍ୟର । ସେ ମତେ ବତେଇଲେ ଧନର ମାହାତ୍ମ୍ୟ । ସେତିକିବେଳେ ଆରମ୍ଭ ହଉଥାଏ ଦେଶରେ ପଞ୍ଚାୟତ ଶାସନ । ବି. ଡ଼ି. ଓ ବାବୁଙ୍କ କରାମତି ଆମେ ଦେଖିଲୁ । ବି. ଡ଼ି. ଓ. ବତାଇଲେ କ୍ଷମତାର ମାହାତ୍ମ୍ୟ । ଏହା ସାଙ୍ଗକୁ ଆସିଲା ରାଜନୀତି ଗାଁଗହଳକୁ । ଧନ, କ୍ଷମତା ଏକାଠି ହେଲେ ହୁଏ ରାଜନୀତି—ଶୀଘ୍ର ବୁଝିପାରିଲି ମୁଁ ।"

ହଞ୍ଚୁର ଅଯଥା ଲମ୍ବା ଷ୍ଟେଟ୍‌ମେଣ୍ଟକୁ ଯଥାସମ୍ଭବ ସଂକ୍ଷିପ୍ତ କରିବାକୁ ଇଚ୍ଛା କରି ଥାନାବାବୁ କଲମ ଟେକିଲେ କାଗଜ ଉପରୁ । ପଚାରିଲେ, "କିନ୍ତୁ ଆମ ପଚାରିବା କଥା, ଆପଣ ଏ କାମରେ ଗୋଡ଼ ପୂରେଇଲେ କାହିଁକି ?"

ଗୋଡ଼ ଉପରେ ପଡ଼ିଥିବା ଗୋଡ଼କୁ ବଦଳ କରି ଦେଇ, ଚା' କପ୍ ସସର ଉପରେ ଥାନା ବାବୁଙ୍କୁ ଚାହିଁ ହଞ୍ଚୁ କହିଲା, "ବି. ଡ଼ି. ଓ.ଙ୍କ ଯୋଗୁଁ । ସେ କହିଲେ ଖବରକାଗଜରେ ନାଁ ବାହାରିଲେ ଡରିବାର କିଛି ନାହିଁ । ନିତି ବଡ଼ ବଡ଼ ନେତା ବଡ଼ବଡ଼ ଧନକୁବେରଙ୍କ ନାଁରେ କୁତ୍ସା ବାହାରୁଚି ଖବରକାଗଜରେ । ସେମାନେ ଡରନ୍ତି ନାହିଁ । ବି. ଡ଼ି. ଓ ଡର ଛଡ଼େଇଦେଲେ । କିନ୍ତୁ ଶତ୍ରୁତା ? କୁତ୍ସାକୁ ନ ଡରିଲେ ବି ଶତ୍ରୁତାକୁ ସହ୍ୟ କରିପାରିବ ନାହିଁ କେବେ ହିଟ୍‌ଲର ।"

ହିଛୁର ଏ ଜବାବ ଶୁଣି ଥାନାବାବୁ ହୋ ହୋ ହୋଇ ହସିଉଠିଲେ । ତାଙ୍କ ହସର କାରଣ ହିଛୁ ବୁଝିପାରିଲା ନାହିଁ—ଚା' କପ୍‌କୁ ଟେବୁଲ ଉପରେ ରଖି ବଡ଼ ବଡ଼ ଆଖିରେ ଚାହିଁଲା ସେ ଚାରିଆଡ଼କୁ । ହଠାତ୍ ଟେବୁଲ ଉପରେ ପଡ଼ିଥିବା ଖଣ୍ଡେ ଇଂରେଜୀ ଖବରକାଗଜ ଉପରେ ସ୍ଥିର ହେଲା ଶେଷରେ ତା' ଦୃଷ୍ଟି । ହିଛୁ ଇଂରେଜୀ ପଢ଼ି ଜାଣି ନାହିଁ । ତେଣୁ କୌତୁହଳବଶତଃ ଥାନାବାବୁଙ୍କୁ ପଚାରିଲା—"ଆଜ୍ଞା, ଏଥିରେ ବାହାରିଚି କି ଆମ ଖବର ?"

"ବାହାରିଚି—"

"କଅଣ ?"

"ସବୁ—ତେବେ ତମ ନାଁ ନାହିଁ ।"

"ଆଉ ତେବେ ?"

"ବଡ଼ ବଡ଼ ନେତାଙ୍କ ବକ୍ତୃତା ଏଇ ଘଟଣା ଉପରେ ।"

ହିଛୁର ମୁହଁ କଳାକାଠ ପଡ଼ିଗଲା । ତା ମୁହଁରୁ ପୁଣି ଫେଣ ବାହାରି ଆସିଲା ରାଗରେ । କହିଲା—"କିନ୍ତୁ ଏ ଘଟଣା ତ ମୋର—ମୋ ଟଙ୍କା···ସେମାନେ କିଏ ? ମୋ ନାଁ ଏଥିରେ ନାହିଁ ? ସତ ?"

ଥାନାବାବୁ ଏଥର ଆହୁରି ବଡ଼ ଜୋର୍‌ରେ ହସିଉଠିଲେ । ତାଙ୍କ ହସରେ ଥାନା ଘରର କାନ୍ଥ ଦୋହଲିଉଠିଲା । ଶେଷରେ ହସ ଥମିବା ପରେ ତାଙ୍କର ସ୍ୱର ଶୁଣାଗଲା—"ଶଳୁ ଏକା ତମର ନାହାନ୍ତି ହିଟ୍‌ଲର ! ତମ ଘଟଣା, ତମ ଟଙ୍କା ଉପରେ ବହୁ ବଡ଼ ବଡ଼ ଶଳୁ ପରସ୍ପର ବିରୁଦ୍ଧରେ ଯୁଦ୍ଧ କରନ୍ତି ବର୍ତ୍ତମାନ । ତମ ଘଟଣା ସେ ଯୁଦ୍ଧରେ ହଜିଯିବ ଖୁବ୍ ଶୀଘ୍ର । ଅସ୍ତୁ ଧର । ଚା' ପିଅ ।'

# ଖାରବେଳ

ଦୁଇହଜାର ବର୍ଷର ସେଇ ପୁରୁଣା ଗୁମ୍ଫାଗୁଡ଼ାକ ଗୁମ୍ଫାଭଳି ଦିଶୁ ନଥିଲା । ସତେ ଯେପରି ଗୁଡ଼ାଏ ପାକୁଆ ପାଟି ଭିତରୁ ପଞ୍ଝାଏ ମୁହଁ ହସି ହସି ପଚାରୁଥିଲେ ସେ ଅଭୁଲା ପ୍ରଶ୍ନ—ହେ ! କୋକାକୋଲା କମ୍ପାନୀ ସତେ ଉଠିଯିବ ଇଣ୍ଡିଆରୁ ?

ହାତୀଗୁମ୍ଫାର ହାତୀ ପେଟ ତଳେ ସେଇ ଯୋଡ଼ ବଙ୍କାଟଙ୍କା ଯାଦୁରି ଚିହ୍ନଗୁଡ଼ାକୁ ଅନେଇ ଜଣେ ବିଦେଶୀ ପର୍ଯ୍ୟଟକ କାନ ପାଖରେ ଜଣେ ଓଡ଼ିଆ ଗାଇଡ୍ ଖୁବ୍ ବଡ଼ ପାଟିରେ ଇଂରେଜୀରେ ବୁଝାଇ ଲାଗିଥିଲା—"ଖାରବେଲ ଗ୍ରେଟ୍ କିଂ ! ମେଡ୍ ହିଜ୍ ହର୍ସେସ୍ ଆଣ୍ଡ ଏଲିଫ୍ୟାଣ୍ଟସ୍ ଡ୍ରିଙ୍କ୍ ଓ୍ୱାଟର ଫ୍ରମ ଦି ଗ୍ୟାଞ୍ଜେଜ୍ । ନୋ ନଟ୍—ଓ୍ୱନ୍ଲି ଦ୍ୟାଟ୍, ମେଡ୍ ପୁଷ୍ୟମିତ୍ର—ଦି' ଗ୍ରେଟ୍ କିଂ ଅଫ୍ ବିହାର ଓ୍ୱାସ୍ ହିଜ୍ (ଖାରବେଲଜ୍) ଫିଟ୍ ଉଇଥ୍ ଦି ଓ୍ୱାଟର ଅଫ୍ ଗ୍ୟାଞ୍ଜେଜ୍ ଟୁ । ଦ୍ୟାଟ୍ ଖାରବେଲ ଦି ଗ୍ରେଟ୍ କିଂ ଓ୍ୱାଜ୍ ରିଏଲି ଏ ଗ୍ରେଟ୍ ଓରିଆ କିଂ ଧାର୍ !"

କିନ୍ତୁ ବିଦେଶୀ ପର୍ଯ୍ୟଟକଙ୍କ କାନରେ ସେ ଶବ୍ଦଗୁଡ଼ିକ ସେତେବେଳେ ପଡ଼ୁଥିଲା କି ନା କିଏ ଜାଣେ !

ସେମାନେ ଯେଉଁଠି ଠିଆହୋଇ ଖାରବେଳଙ୍କର କୀର୍ତ୍ତି ପାଠର ତର୍ଜମା ଚଳାଇ-ଥିଲେ ତାର ଅନ୍ୟ ପାଖ ପାହାଡ଼ରୁ ଗୋଟିଏ ବିଚିତ୍ର ଶବ୍ଦ ଅନବରତ ଶୁଣାଯାଉଥିଲା । ସତେ ଯେପରି କୌଣସି ଟେଲିଗ୍ରାଫ୍ ଅଫିସର ଟେଲିଗ୍ରାଫ୍ ଯନ୍ତ୍ରଟିରେ ଲଗାତର କିଟ୍ କିଟ୍ କିଟ୍ କିଟ୍ କରି କଅଣ ଜରୁରୀ ସମ୍ବାଦ ଅଜସ୍ର ପରିମାଣରେ ଅଜାଡ଼ି ଚାଲିଥିଲା ।

"ହ୍ୱାଟ୍ସ ଦାଟ୍ ! ଏନି ଟେଲିଗ୍ରାଫ୍ ଅଫିସ୍ ହିଅର୍ ?"

ଗାଇଡ୍‌ର ଧ୍ୟାନ ତଥାପି ଭାଙ୍ଗି ନଥିଲା । ସେ ତାର ସମ୍ବାଦ ସେହିପରି ଅଜାଡ଼ି ଚାଲିଥିଲା—

"ଓରିଆ ମ୍ୟୁଜିକ ! ଭେରି ସୁଇଟ୍ ଧାର୍ ! ଏ ବେଗର୍ ସିଙ୍ଗିଙ୍ଗ୍ ଜଗନ୍ନାଥ ଭଜନ । ଦ୍ୟାଟ୍ ମ୍ୟୁଜିକ୍—ହିଜ୍ ରାମତାଳି ଧାର୍ !"

ବିଦେଶୀ ପର୍ଯ୍ୟଟକ ସେତେବେଳକୁ ହାତୀଗୁମ୍ଫାରୁ ବ୍ୟାଘ୍ରଗୁମ୍ଫା ଅଭିମୁଖେ ଆରମ୍ଭ କରିଥିଲେ ତାଙ୍କ ଯାତ୍ରା । ଅବିଳମ୍ବେ ସର୍ପଗୁମ୍ଫା ଅତିକ୍ରମ କରି ପର୍ଯ୍ୟଟକ ତାଙ୍କର ସ୍ୱାଭାବିକ ହୃଷ୍ଟ ଚାଲିଲେ ଗାଇଡ଼କୁ ଯଥେଷ୍ଟ ପଛରେ ପକେଇ ଦେଇ ପାହାଡ଼ର ଶୀର୍ଷରେ ପହଞ୍ଚି ଯାଇଥିଲେ ଓ ସେଠୁ ଚତୁଃପାର୍ଶ୍ୱର ସେଇ ଦିଗନ୍ତବିସ୍ତାରୀ ମୁକ୍ତ ଅଞ୍ଚଳକୁ ଚକ୍ଷୁକଲା ପରି କେତେବାର ଆଚମନ କରିସାରି ଆଗେଇଯାଇଥିଲେ ।

ରାଣୀ ଗୁମ୍ଫାର ସେଇ ମନୋରମ ପ୍ରାଙ୍ଗଣରେ ବେଶ୍ ଯାତ୍ରୀଭିଡ଼ ଜମିଥାଏ ସେତେବେଳେ । ସେମାନେ ସମସ୍ତେ ଭାରତୀୟ । ଅଧିକାଂଶ ରାଜ୍ୟ ବାହାରର । ଗାଇଡ଼ମାନେ ବୁଝେଇ ଚାଲିଥାନ୍ତି ସେହ୍ୱା ସେହ୍ୱା ଭାଷାରେ—

"ଏ ରାଣୀ ଗୁମ୍ଫା । ଏଠି ମହାରାଜା ଖାରବେଳଙ୍କ ମହାରାଣୀ ତପସ୍ୟା କରୁଥିଲେ । ଏ ପଟେ ରାଣୀ ତପସ୍ୟା କରୁଥିଲେ, ଆରପଟେ ରଜା ତପସ୍ୟା କରୁଥିଲେ । ଖାରବେଳ ଜୈନ ଥିଲେ କ ନା ! କଠୋର ତପସ୍ୟା କରି ରାଜାରାଣୀ ଦେହ ତ୍ୟାଗ କରିଥିଲେ । ହଁ, ଅବଶ୍ୟ ଏ ଗୋଟାଏ ଥିଓରି, ଆଉ ଗୋଟାଏ ଥିଓରି ଏବେ ବାହାରିଛି ଏଇ ଅଲ୍‌ଡ଼ଦିନ ହେବ । ଏଠାକାର ଜଣେ ଓଡ଼ିଆ ନାଟ୍ୟ ଗବେଷକ କହୁଛନ୍ତି—ଏ ରାଣୀଗୁମ୍ଫା, ଗୁମ୍ଫାଫୁମ୍ଫା କିଛି ନୁହ ପ୍ରକୃତରେ । ଗୋଟାଏ ଦ୍ୱି ତଳ ଷ୍ଟେଜ ଜାଣି ଏ । ଏଠି ଦୁ'ହଜାର ବର୍ଷ ତଳେ ନାଟକ ହଉଥିଲା—ନାଟକ । ଡବଲ୍ ଟାଇଅର୍ ଷ୍ଟେଜ ସେ କାଳର ଏ । ଭାରି ଆଡ଼ଭାନସ୍ ଥିଲା ଏ ଜାତି । ଦେଖୁନାହାନ୍ତି—ଦୁ'ହଜାର ବର୍ଷ ତଳେ କି ଅଧୁନିକ ଚିନ୍ତା କରିଥିଲେ ସେମାନେ । ଧନ୍ ନାଟକ ଚାଲିଥିଲା ଏଠି ସେତେବେଳେ । ଦର୍ଶକମାନେ ଏଇଠି ବସୁଥିଲେ—ହେଇଟି ଏଇଠି ! ଆଉ ହେଇ ସେଠି ଚାଲିଥାଏ ନାଟକ । ଆପଣ ଆଶ୍ଚର୍ଯ୍ୟ ହେବେ—ଭରତ ମୁନି ଯେ ଆମ ଭାରତୀୟ ନାଟ୍ୟ ପରମ୍ପରାର ବାପ, ତାଙ୍କ ଶାସ୍ତ୍ରରେ ଯାହା ମାପ ଦିଆହେଇଛି ଷ୍ଟେଜ୍‌ର, ବରାବର ସେଇ ମାପରେ ତିଆରି ଏ ଷ୍ଟେଜ୍ । ଓଡ଼ିଆମାନେ ଭାରି କଳାପ୍ରିୟ ଜାତି ଥିଲେ । ଦେଖୁନାହାନ୍ତି କ'ଣ କରିଚନ୍ତି ଏଠି—ଏ ପାହାଡ଼ ଗୋଟାକ ଯାକ । ଗୋଟାଏ ବିରାଟ ପ୍ୟାଲେସ୍ ବୁଝିଲେ ହୁଏ ।

ଯେତେବେଳକୁ ବିଦେଶୀ ପର୍ଯ୍ୟଟକ ତାଙ୍କ ଗାଇଡ଼୍‌ଠାରୁ ରାଣୀଗୁମ୍ଫାର ସେଇ ବିଚିତ୍ର ସୌନ୍ଦର୍ଯ୍ୟର ତାତ୍ପର୍ଯ୍ୟ ସହ ନୂଆ-ପୁରୁଣା ତତ୍ତ୍ୱଗୁଡ଼ିକୁ ବୁଝି ନେଇ ସାରିଥାନ୍ତି ଓ ସ୍ୱାଭାବିକ ଉତ୍ସୁକତା ଗୁଲରେ ପୁଣି ଥରେ ଗାଇଡ଼୍‌କୁ ପଛରେ ପକେଇ ଦେଇ ଆଗେଇ ଚାଲିଥାନ୍ତି ସେ ।

ମୋଟେ ପାଞ୍ଚ ଛ' ବର୍ଷର ପିଲାଟି ଚା' ଦୋକାନରେ ଚାକିରି କରିଥିବା ଯୋଗୁ ହେଉ ବା ତାର ଜନ୍ମଗତ ଗୁଣରୁ ହେଉ, ବେଶ୍ ଫୁର୍ତ୍ତି ଆଉ ଭାରି ଖୁରୁସୁଣିଆ ଦେଖାଯାଉଥାଏ । ତାର ସାମ୍ନା ଦାନ୍ତ ଦୁଇଟା ସେଇ ସଦ୍ୟ ପଡ଼ିଥିବା ହେତୁ ତା ମୁହଁ ଅଦ୍ଭୁତ ସୁନ୍ଦରିଆ ଦିଶୁଥାଏ ମଧ୍ୟ । ବୋଧହୁଏ ସେଇ କାରଣରୁ ଚାଦୋକାନର ଭିଡ଼ ଭିତରେ ସେ ପିଲା ଉପରେ ଚପଟ ପଡ଼ୁଥାଏ ବହୁତ ।

"ଆରେ, ଗୋପୀ ! କରେ ଦେଲୁ ସେଠି ଚା—" ମାଲିକ ବାରବାର ପାଟି ଗୋଟ'ଏ ଗୋଟାଏ କରୁଥାଏ ଦୋକାନ ଭିତରୁ, ଆଉ ସେ ପାଟି ଶୁଣିଲା ମାତ୍ରେ ଗୋପୀର ଫୁର୍ତ୍ତି ବଢ଼ିଯାଉଥାଏ କେଇଗୁଣ ।

କିନ୍ତୁ, ଗରାଖମାନଙ୍କ ବଦ୍‌ଗୁଣ ! ପୋପୀର ଆଁ ମେଲେଇ ଜଣେ ପରଦେଶୀ ଭଦ୍ର ମହିଳା ତାର ଭଙ୍ଗାଦାନ୍ତକୁ ପର୍ଯ୍ୟବେକ୍ଷଣ କରୁଥାନ୍ତି ବହୁତ ବେଳୁ । ତାପରେ କଅଣ ଭାବ

ପିଲାଟିକୁ ପଚାରୁଥାନ୍ତି କେତେ ଅବାନ୍ତର ପ୍ରଶ୍ନ—ଘର ଏଇଠି ? ବାପ ମା ଅଛନ୍ତି ଏଠି ? ତେବେ ରହୁଚୁ କୋଉଠି ? ଏ ଦୋକାନୀ କ'ଣ ତୋର ବନ୍ଧୁବାନ୍ଧବ ? ଆଚ୍ଛା, ଚାକିରିରେ ଅଛୁ ? ଦରମା ? ହୁଁ ?

ଗୋପୀ ପାଇଁ ସେ ପ୍ରଶ୍ନଗୁଡ଼ାକ କିଛି ନୂଆ ନୁହେଁ । ଗଲା ଛ'ମାସ ଧରି ଏମିତି କେତେ ପ୍ରଶ୍ନର ଉତ୍ତର ଗଡ଼ ଗଡ଼ ହେଇ ଦେଇ ଶିଖିଲାଣି ସେ—ଘର ଏଠୁ ପଚାଶ ମାଇଲ । ହଁ, ବାପ ଅଛି; ମା ଅଛି, ଭାଇ ଭଉଣୀ ଅଛନ୍ତି । ମାସକେ ଥରେ ଯାଏ ଘରକୁ । ବସ୍‌ରେ ବସିକରି ଯାଏ । ଏଇଠୁ ବସ୍ ଧରେ । ନାଇଁମ—ଏ ଦୋକାନୀ ମୋର ବନ୍ଧୁବାନ୍ଧବ ନୁହନ୍ତି । ଭଲଲୋକ । ତାଙ୍କୁ ଭାଇ ବୋଲି ଡାକେ । ସେବେ ଆମେ ତ ଚାକିରିଆ ଲୋକ ଆଜ୍ଞା । କେତେବେଳେ କୋଉ ଭୁଲ୍ ହେଲେ ମାଡ଼ ଗୋଟାଏ ଅଧେ ବାଜିଯାଏ ପିଠିରେ । କାନ୍ଦେନାଇଁ କମାରୁ । କାନ୍ଦିବ କାହିଁକି ମ ? କାନ୍ଦିଲେ କ'ଣ ଦରମା ମିଳିବ କି ? ନାଇଁ, କଦାପି ନାଇଁ । ମୁଁ କ'ଣ ପିଲା କି ? ବସ୍‌ରେ ବସିଲେ ତ ଏଇ ଘଣ୍ଟାକେ ଯାଇ ଘରେ !

ଭଦ୍ରଲୋକ ପିଲାଟିର ଗଡ଼ ଗଡ଼ କଥା କେତେ ବା ବୁଝୁଥାନ୍ତି ତାଙ୍କୁ ଜଣା । କିନ୍ତୁ ପିଲାଟି ପ୍ରତି ତାଙ୍କର ଆଗ୍ରହ ଆଦର ବଢ଼ିଯାଇଥାଏ କଷ୍ଟେ ଇତି ମଧ୍ୟରେ । ସାଙ୍ଗ ସାଥିରେ ଆସିଥିବା ଅନ୍ୟାନ୍ୟ ପରଦେଶୀ ପର୍ଯ୍ୟଟକଙ୍କୁ ଗୋପୀ ସାଥିରେ ପରିଚୟ କରିଦେବା ଉଦ୍ଦେଶ୍ୟରେ ସେ ତାକୁ ପ୍ରାୟ କୋଳେଇ ନେଇ ସାରିଥାନ୍ତି । ପିଠିରେ ହାତ ବୁଲାଇ ଆଖି ଆଖି ଛଳ ଛଳ କରି ବାରମ୍ବାର ସେ ସେଇ ପ୍ରଶ୍ନଗୁଡ଼ିକ ତାକୁ ପୁଣି ପୁଣି ପଚାରୁଥାନ୍ତି—

"ବାପ ମା ଅଛନ୍ତି ? ଘର ଏଠୁ ପଚାଶ ମାଇଲ ? ଏକା ଚାଲିଯାଉଚୁ ବସ୍‌ରେ ? ଦେଖେଇଁ ତୋ ଆଁ ! ଏ ଦାନ୍ତ ଯୋଡ଼ାକ ତୋର ପଡ଼ିଲା କେବେ କରେ ବାବୁ ଗୋପୀ ? ହ, ତୁ ତେବେ ଚାକିରି କରୁଚୁ ପରା ଏଠି ! ଓହୋ, ରାତିରେ କୋଉଠି ଶୋଉଚୁରେ ବାବା ! ତୋର ମା କୋଳ ମନେପଡ଼େ ନାଇଁକିରେ ଧନମଣି ? ହାୟରେ—ମଣିଷ, ଏଇଦିନୁ ତୁ ଏ ରୂପ ଧରିଲୁ । କୋଉ ମା ବାପ ସେ ଯାହାଙ୍କ ଛାତି ଫାଟି ଯାଉନାଇଁ ରାତିରେ—ଏ ଭଳି ପିଲାକୁ ଛାତି ପାଖରୁ ଛାଡ଼ିଦେଲେ ଏଠିକି । ଏ ନିର୍ଜନ ଅପନ୍ତରା ଇତିହାସର ଧ୍ୱଂସସ୍ଥଳୀ—ଏଠି ରାତିରେ ଏବେ ବି ବ୍ୟାଘ୍ର ଗର୍ଜନ କରେ ବୋଲି କହୁ ନଥିଲା ସେ ଗାଇଡ୍ ?"

"ରାତିରେ ? ରାତିରେ ଏଠି କିଛି ବିପଦ ନାଇଁମ । ଦେଖନ୍ତୁ ଚାରିଆଡ଼କୁ—" ହର୍ଷିପ ମଝିରେ ଏଣେତେଣେ ଚା କପ୍ ଧରି ଧାଁଧପଡ଼ କରୁକରୁ ଗୋପୀ ଆଉଜି ପଡ଼ୁଥାଏ ଟିକିଏ ଟିକିଏ ପରଦେଶୀ ଭଦ୍ରମହିଳାଙ୍କ ଉପରକୁ, ଆଉ ବୁଝେଇ ଦଉଥାଏ ମଧ୍ୟ—"ବିପଦ କଣ ? ଏ ପରା ଠାକୁରଙ୍କ ଜାଗା ! ମୁନି ଋଷିମାନେ ପୂଜା କରୁଥିଲେ ଆଗେ । ହିଂସା ନାହିଁ ଏଠି । ହିଂସା କୋଉଠୁ ଆସିବ ? ଠାକୁରଙ୍କ ଜାଗା ଏ । ମତେ ରାତିରେ ଡର ମାଡ଼େ ନାଇଁ । ବାଘ ଫାଘ କିଛି ଏଠି ନାଇଁମ—ମିଛ । ତମକୁ ଡରେଇବାକୁ ସେମିତି

କହୁଚନ୍ତି ନା ! ତେବେ ମିଶର ଅଛନ୍ତି, ମୟୂର ଅଛନ୍ତି । ଗାଡରେ ବାହାରନ୍ତି । କାହିଁ ଗାଡରେ ଖାଲି ମଜା କରନ୍ତି ନା !"

ଗୋପୀର ଏଇ ଗୁଡ଼ୁରୁ ଗୁଡ଼ୁରୁ ଗପସପ ଆଉ ତା ଖୁରୁସୁଣିଆ ଚେହେରା ଯୋଗୁ ଦର୍ଶକମାନେ ବେଶ୍ ଉପଭୋଗ କରୁଥାନ୍ତି ସେମାନଙ୍କର ଗ୍ରୀ' ଜଲଖିଆ । କିନ୍ତୁ ଯୋଉ ପରଦେଶୀ ମହିଳାଟି ଗୋପୀ ସମ୍ପର୍କରେ ମୂଳରୁ ଆଗ୍ରହୀ ହୋଇଉଠିଥାନ୍ତି, ତାଙ୍କ ଆଖିରେ ଜକେଇ ଆସିଥିବା ଲୁହ ଶୁଖି ନଥାଏ ସେଯାକେ । ଗୋପୀର ପ୍ରତ୍ୟେକଟି କଥା, ଗୁଳି ଆଉ ହସ ଭିତରୁ କି ଦୁଃଖର ଆଭାସ ଦେଖୁଥାନ୍ତି ସେ କେଜାଣି, ତାଙ୍କ ଆଖି କଣରେ ଜକେଇ ଯାଇଥିବା ଲୁହ ଗଡ଼ିପଡ଼ୁଥାଏ ମଝି ଲମ୍ବା ଧାର ଯୋଡ଼ିଏ ହେଇ ନାକ ଭିତରେ ଭିତରେ ।

"ଗୋପୀ ! ବାପାଙ୍କା ପରା, ମୋ ଧନ ପରା—ଗାଡରେ ଏଣେ ତେଣେ ବାହାରୁ ନାହିଁଟି । ଏ ଜାଗା କେଡ଼େ ବିଷମ ଦେଖେଚୁଟି ! ଦେଖିଲୁ ଯେ ଗୁମ୍ଫାଗୁଡ଼ାକୁ—ପାକୁଆ ବୁଢ଼ାଙ୍କ ଭଳି କେମିତି ଗୁହିଁଚନ୍ତି ଆଁ କରି ତଳଆଡ଼େ ! ଖାଲି ଶୋଷିଲା ଭେକଲା । ତନ୍ତ୍ର ମନ୍ତ୍ର ଜଡ଼ିବୁଟି ସବୁ ଜଣା ସେଗୁଡ଼ାକଙ୍କୁ । ସେ ଗୁମ୍ଫାଫୁମ୍ଫା ଭିତରକୁ ଯିବୁ ନାହିଁଟି କେବେ ଗାଡରେ କାହା ସାଙ୍ଗରେ ! ଏଠି କୋଉଠି ଶୋଉଚୁଟିରେ ଧନ କାହା ପାଖରେ ଗାଡରେ ।"

ଗୋପୀ ତାର ଭଙ୍ଗା ଦାନ୍ତ ଭିତରୁ ହସୁଥାଏ କରକର ବିନା କାରଣରେ । ଝପଟି ଯାଉଥାଏ ଖାଲି ଅଇଁଠା ଗ୍ଲାସ୍'ଗିଲାସ୍‌ଗୁଡ଼ାକୁ ଉଠେଇ ନେଇ ଦୋକାନ ଭିତରକୁ । ଝପଟି ଆସୁଥାଏ ବଡ଼େ ବଡ଼େ ଡାଲା ଡାଲା ଭୁଜିଆ ଗିଲାସ ଏକା ସାଙ୍ଗେ ଦୁ' ହାତରେ ଧରି ଗରାଖ—ଦର୍ଶକମାନଙ୍କ ଭିଡ଼ ଭିତରକୁ । ତାର ମଝିରେ ପୁଣି ଟିକିଏ ଲାଗି ଆସୁଥାଏ ସେ ତାର ହିତାକାଂକ୍ଷିଣୀ ସ୍ତ୍ରୀଲୋକଟି ଆଡ଼କୁ, ଆଉ ସତେ କି ତାକୁ କଅଣ କହିଲେ ଯେ ଡରିଯିବ ଆଉ ତା ଆଖିରୁ ବେଶି ବେଶି ଲୁହ ଝରିପଡ଼ିବ ଏତିକି ବୁଝିନେଇ ପାରୁଥାଏ ଗୋପୀ ସେତେବେଳକୁ ।

"ଗାଡରେ ? କୋଉଠି ଶୁଏ ମୁଁ ପଚାରୁଚଟି !" କର୍ କର ହେଇ ହସି ପକେଇ ଗୋପୀ ଆସ୍ତେକିନା ସ୍ତ୍ରୀଲୋକଟିର କାନ ପାଖରେ ମୁହିଁ ଗୁଞ୍ଜି କହିଦଉଥାଏ, "ମୁଁ ପରା ଶୁଏ ସେଇ ଗୁମ୍ଫା ଭିତରେ । ହେଇ ଦେଖନ୍ତୁ ସେଠି—ହାତୀଗୁମ୍ଫା, ତା ପାଖକୁ ବାଘଗୁମ୍ଫା, ତା ପାଖକୁ କଅଣ କହିଲ ? ସାପ ଗୁମ୍ଫା ପରା ! ଯେ ଚଉତରା ଦେଖୁଚଟି ହେଇ ସେଠି ? ହାତୀ ଗୁମ୍ଫା ଆଗରେ ଯୋଉ ଗହମ—ହେଇ ସେ ଉପରେ । ଓଃ ଖାଲି ପବନ ବି ସେଠି ଖରାଦିନେ । ସେଇଠି ଶୁଏ । ମନହେଲେ ଗୁମ୍ଫାରେ ବି ଶୁଏ । ଡର ମାଡ଼େ ନାହିଁ ମତେ ।"

"ଏଁ ? ଗୁମ୍ଫାରେ ଶୋଉଚୁ—ରୁ ବୋଲି ବକଟେନାକୁ ପିଲା ?"—ଦର୍ଶକ ପର୍ଯ୍ୟଟକମାନଙ୍କ ଭିତରୁ କେହି କେହି ଉପରେ ପଡ଼ି ଗୋପୀର ବାହାଦୁରୀ କଥାକୁ କାନ

ଦଉ ଦଉ ଅଧେ ଆଶ୍ଚର୍ଯ୍ୟରେ ଅଧେ ଅବିଶ୍ୱାସ ମିଶା ବ୍ୟଙ୍ଗରେ କହୁ ଥାଆନ୍ତି ସେତେବେଳେ "ଗାଲୁଆ ମିଛୁଆଟାଏ କରେ ! ଏଇଥିନ୍ତୁ ମିଛ କହିଲୁଣି—ନା ? ଗୁମ୍ଫାରେ ଶୋଉଚୁ ତୁ ରାତିରେ—ଏଁ ? ପରଶୁରବ ଏଇଲେ ତୋ ମାଲିକକୁ—ସତ କହୁଚୁ କି ମିଛ କହୁଚୁ ଦେଖିବା ଏଇଲେ ?"

"ପଗ୍ଭରୁନ !"—ଗୋପୀର ହସ ହସ ମୁହଁ ଅଦ୍ଭୁତ ଉଜ୍ଜ୍ୱଳ ହୋଇଉଠେ ସେତେବେଳେ, "ପଗ୍ଭରୁନ । ସତ ତ । ରାତିରେ ମୁଁ ସେଇଠି ଯାଇ ଶୁଏ । ଏକା । ମତେ ଡରଫର କିଛି ନାହିଁ । ଆମେ ଓଡ଼ିଆ ଲୋକ—ଜାଣିଚ ନା ? ଆମେ କାହାକୁ ଡରୁନାହିଁ । ତମକୁ ଏକଥା କହିନାହାନ୍ତି କେହି ଏଯାକେ ? ଖାରବେଳ ରଜା ଆମର କେମିତି ସାହସୀ ରଜା ଥିଲେ ଜାଣିଚ ନା ? ହାତୀ ଘୋଡ଼ାଙ୍କୁ ନେଇ ପାଣି ପିଏଉଥିଲେ—ତେଣେ ଗୋଟିଏ ନଈ ଅଛି, ତା ନା ଗଙ୍ଗା ନଦୀ—ଜାଣିଚନା—ହିଁ ସେଠେଇଁ ପାଣି ପିଏଇ ଦେଇଥିଲେ ସମସ୍ତଙ୍କୁ ସେ ।"

ଗୋପୀର ପ୍ରଗଲ୍‌ଭତା ବଢ଼ିଉଠୁଥାଏ । କିନ୍ତୁ ଆଶ୍ଚର୍ଯ୍ୟର କଥା ତାର ସେ ପ୍ରଗଲ୍‌ଭତା ଯେତିକି ଯେତିକି ବଢ଼ୁଥାଏ ଦର୍ଶକ ଗଗ୍ଭଙ୍କମାନଙ୍କର ମୁହଁ ସେତିକି ସେତିକି ଶୁଖି ଶୁଖି ଆସୁଥାଏ । ଏପରିକି ସେଇ ଭଦ୍ରମହିଳାଙ୍କ ଓଦା ଆଖି ମଧ୍ୟ ଯଥେଷ୍ଟ ଶୁଖି ଶୁଖି ଆସୁଥାଏ ସେତେବେଳେ । ଶେଷରେ ସେ ଦଳକ ଗଗ୍ଭଙ୍କ-ଦର୍ଶକ ଦୋକାନରୁ ଉଠିଲେ ଆଉ ଅଦୂରରେ ଅପେକ୍ଷା କରିଥିବା ଯାତ୍ରୀବାହୀ ବସ୍ ଆଡ଼କୁ ବାହାରିଗଲେ ।

ଏତେବେଳ ପର୍ଯ୍ୟନ୍ତ ଟିକିଏ ଦୂରଛଡ଼ା ହୋଇ ଠିଆ ହୋଇଥାନ୍ତି ବିଦେଶୀ ପର୍ଯ୍ୟଟକ ଜଣକ—ଦୋକାନ ଆଢ଼ୁଆଳରେ । ହାତରେ ଅଣ୍ଡା କୋକାକୋଲା ବୋତଲଟିଏ ଧରି ଅନାଉଥାନ୍ତି ସେ ଚତୁର୍ଦ୍ଦିଗକୁ କୋଉ ଆଖିରେ କିଏ ଜାଣେ । ତାଙ୍କ ପାଖରେ କୋକାକୋଲା ବୋତଲଟିଏ ଧରି ଠିଆହୋଇଥାଏ ମଧ୍ୟ ଗାଇଡ଼ ଜଣେ ଓ ଇଂରେଜୀରେ ତର୍ଜମା କରି ବୁଝେଇ ଗୁଲିଥାଏ କ'ଣ ସବୁ ଗଡ଼ ଗଡ଼ ହୋଇ କିଏ ଜାଣେ !

"ଦ୍ୟାଟ୍ ଅର୍ଚ୍ଚିନ୍ ! ଆଇ ଲାଇକ୍ ହିମ୍ ଭେରି ମଚ୍—ଡୋଣ୍ଟ୍ ନୋ ହ୍ୱାଇ !" କୋକାକୋଲାର ଷ୍ଟ୍ର ଡଳୁ ଗୋଟିଏ ଲମ୍ବା ଢୋକ ଅଣ୍ଡା ପାନୀୟ ଶୋଷି ନଉ ନଉ ବିଦେଶୀଙ୍କ ଆଖି ଚତୁର୍ଦ୍ଦିଗରୁ ଘୂରିଆସି ପୁଣି ଲାଖିଯାଉଥାଏ ସେଇଠି—ସେଇ ଚା' ଦୋକାନ ଟୋକା ଗୋପୀ ଉପରେ ।

"ଓ୍ୱାଣ୍ଟ୍ ଟୁ ଆଡପଟ୍ ? ଆଇ କ୍ୟାନ୍ ଆରେଞ୍ଜ୍ ଇନ୍ ଦ୍ୟାଟ୍ କେସ୍ ।" ଗାଇଡ଼ର କୋକାକୋଲା ବୋତଲଟି ସେତେବେଳକୁ ଶୁଖି ଶୁଖି ଆସୁଥାଏ ।

"ଆରେଞ୍ଜ ହ୍ୱାଟ୍ ?" ଆଶ୍ଚର୍ଯ୍ୟ ହୋଇ ବିଦେଶୀ ପରିବ୍ରାଜକଙ୍କ ଆଖି ବୁଲିଗଲା ଗାଇଡ଼ର ଲମ୍ବା ପାତିଆ ମୁହଁଟା ଆଡ଼କୁ ହଠାତ୍ ।

"ଫରେନରସ୍ ଆଡ଼ପଟ୍ ଲଟ୍ ଅଫ୍ ଓଡ଼ିଆ ଅରଫାନ୍‌ସ୍ ନାଓ ଏ ଡେଜ୍ ସାର୍ ! ଇଟ୍‌ସ ପସିବଲ୍ ! କ୍ୱାଇଟ୍ ପସିବଲ ! ଲେଟ୍ ମି ସି ଦେନ୍ !"

ଗୋପୀର ମାଲିକ ଦୋକାନୀଟି ସେତେବେଳକୁ ଦୋକାନ ବାହାରକୁ ଆସି ନୂଆ ଗରାଖଙ୍କ ବାଟକୁ ଅପେକ୍ଷା କରୁଥାଏ । ଗାଇଡ୍ ହାତ ଠାରି ତାକୁ ଡାକି ଯାଉଥାଏ ପାନ୍ଥଙ୍କୁ ।

"ନୋ—ଡୋଣ୍ଟ୍ ଡୋଣ୍ଟ୍…" ତରବର ହେଇ କୋକାକୋଲାର ଅଧାପିଆ ବୋତଲଟାକୁ କେଉଁଠି ରଖିବ ନ ଜାଣି ପାରି ବିଦେଶୀ ପରିବ୍ରାଜକ ଏଣିକି ତେଣିକି ଗୁହୁଁ ଗୁହୁଁ କହିଲେ, "ଇଟ୍‌ସ ଟେରିବଲ୍ ! ଉଇ ମଷ୍ଟ ଗୋ ।"

ତେଙ୍ଗା ଗୋରା ବଦ୍‌ରାଗୀ ଆଉ ଅନ୍ୟମନସ୍କ ଲୋକଟାର ପଛେ ପଛେ ଗାଡ଼ି ପର୍ଯ୍ୟନ୍ତ ଗୋଡ଼େଇ ଯାଉ ଯାଉ ଗାଇଡ୍‌ର ମୁଣ୍ଡରେ କେତେ କ'ଣ ଦୁଷ୍ଟ ଚିନ୍ତା ପଶି ଯାଉଥିଲା ସେତେବେଳେ କିଏ ଜାଣେ !

ଗାଡ଼ି ଭିତରେ ବସିଗଲା ପରେ ଟିକିଏ ସାହସ ଆସିଯିବାରୁ ଗାଇଡ୍‌ର ପାଟିରୁ ବାହାରିଲା କଥା ପଦେ—

"ଏକ୍ସକ୍ୟୁଜ୍ ମି—ଆଇ ଥଟ୍…"

"ନୋବଡ଼ି ଥିଙ୍କ୍‌ସ ଏନିଥିଙ୍ଗ ହିଅର ମିଷ୍ଟର ଗାଇଡ୍ !" ବଦ୍‌ରାଗୀ ବିଦେଶୀ ପରିବ୍ରାଜକଟି• ଆଉ ଚୁପ୍ ରହିପାରିବ ନାହିଁ ଜାଣି କହିଲା—"ଆଇ ହାଭ ଫିନିସଡ଼ ମାଇଁ ଟୁର୍ ଅଫ୍ ଇଣ୍ଡିଆ—ଏ ପ୍ରେଟି ମଡ଼ର୍ଣ୍ଣ ଆନସିଏଣ୍ଟ କଣ୍ଟ୍ରି, ହୋୟାର କେଉସ ଗ୍ରୋ ଇନ୍ ଦ ମାଉଥସ୍ ଅଫ୍ ପ୍ରେଟି ମଡ଼ର୍ଣ୍ଣ ଚିଲଡ୍ରେନ !"

ପରିବ୍ରାଜକର ଗାଡ଼ି ଭିତରୁ ଗାଇଡ୍‌ର ଆଖିରେ ଖଣ୍ଡଗିରିର ଗୁମ୍ଫାଗୁଡ଼ାକ ତଥାପି ନାଚୁଥାଏ ଗୁଡ଼ାଏ ପାକୁଆ ମୁହଁର ପାନଚୋବା ପାଟିପରି । ତାରି ଭିତରୁ ପାଞ୍ଚ ବର୍ଷର ପିଲା ଗୋପୀର ଦାନ୍ତଭଙ୍ଗା ପାଟିର ଗୁମ୍ଫା ଆଁ କରି ଦେଖୁଥାଏ ସେମାନଙ୍କୁ ।

କେହି ଜଣେ ପରଦେଶୀ ପର୍ଯ୍ୟଟକ ବଡ଼ ପାଟିରେ ପଚାରୁଥାଏ—"ହେ ! କୋକା-କୋଲା କମ୍ପାନୀ ସତେ ଉଠିଯିବ ଇଣ୍ଡିଆରୁ ? ଗୋପୀ ହସୁଥାଏ । ମହାରାଜ ଐର ମହାମେଘବାହନ ଖାରବେଳଙ୍କ ପିଲାଦିନର ହସଟିଏ ପରି ସାରଲ୍ୟପୂର୍ଣ୍ଣ ହସଟିଏ ହୁଏତ ସେ ।

——

# ଆଧୁନିକ ରାକ୍ଷସ

ସହରର ଶିଶୁଉଦ୍ୟାନରେ ସେଦିନ ସନ୍ଧ୍ୟାରେ ପିଲାମାନଙ୍କର ବିକଳ ଆର୍ତ୍ତନାଦରୁ କେବଳ ଏତିକି ବୁଝିହେଉଥିଲା—"ମନିକୁ ରାକ୍ଷସ ଗିଳିଦେଲା—"

ପିଲାମାନଙ୍କର ଚିତ୍କାରରେ ଆଖପାଖ ଘରୁ, ସରକାରୀ କ୍ୱାର୍ଟର୍ସରୁ ଲୋକେ ବାହାରି ଆସିଲେ । ସରକାରୀ ଅଫିସ ଫେରନ୍ତା ପଞ୍ଝାପଞ୍ଝା କିରାଣୀ, ପିଅନ, ଦୁଇଚାରିଜଣ ଗ୍ରେଡ଼ ମହିଳା ଓ ଅତି ବଡ଼ ଅଫିସର ଏବଂ ଅସଂଖ୍ୟ ପଥଚାରୀ ମଧ୍ୟ ଆକୃଷ୍ଟ ହୋଇ ଧାଇଁଆସିଲେ । ଅଳ୍ପ ସମୟ ପାଇଁ ସ୍ଥାନଟି ଲୋକାରଣ୍ୟ ହୋଇ ଅବଶେଷରେ ସବୁ ଶୁନ୍‌ଶାନ୍ ପଡ଼ିଗଲା ବ୍ୟତୀତ ଆଉ କ'ଣ ବା ଆଶା କରାଯାଇଥାନ୍ତା ସେପରି ବାଲିଶିଆ ଉପାଖ୍ୟାନରୁ । ଲୋକେ ହସିଲେ । କେହି କେହି ବିରକ୍ତ ହୋଇ ପିଲାଙ୍କୁ ଗାଳିଦେଲେ ଓ ଆକଟ କରି କହିଲେ—

"ହେ, ଚଗଲାଗୁଡ଼ାକ ହ୍ୟାପ୍ । ଆଉ କିଛି ଖେଳ ଖେଳିବାକୁ ନାହିଁ ତମର ! ଚାଲୁଛା ବଦ୍‌ମାସ କୋଉଠିକାର । ରଡ଼ି ପକେଇଚ କ'ଣ ନା ମନିକୁ ରାକ୍ଷସ ଗିଳିଦେଲା । ହଇରେ, ଆଜିକାଲି ରାକ୍ଷସ ଅଛନ୍ତି ଆଉ ? ଦିନ ଦିପହରରେ ହୁରି ପକେଇଚନ୍ତି ହ୍ୟାପେ—ଗିଳିପକେଇଲା, ଗିଳିପକେଇଲା !"

ସେତେବେଳକୁ ଅବଶ୍ୟ ଦିନ ଦିପହର ନୁହେଁ—ପ୍ରକୃତରେ ମୁହଁସଞ୍ଜ ହୋଇଯାଇ ସାରିଥିଲା । ସହରର ରାସ୍ତାକଡ଼ ବିଜୁଳିବତିଗୁଡ଼ିକରେ ସେଇମାନ ଆଲୁଅ ଜଳିଉଠୁଥିଲା । ପିଲାମାନେ ଶିଶୁଉଦ୍ୟାନ ଗ୍ରୀଲ୍ ବାହାରେ ଜମିଥାନ୍ତି ଓ ଲୋକଙ୍କ ହସ ଆଉ ଗାଳିମନ୍ଦ ଶୁଣି ମଧ୍ୟ ଚୁପ ପଡ଼ିପାରୁ ନ ଥାନ୍ତି । ସେମାନଙ୍କ ମୁହଁଗୁଡ଼ାକ ଦିଶୁଥାଏ କଳାକାଠ । ସେମାନଙ୍କ ଆଖିଗୁଡ଼ାକ ଏତେ ଡମାଡ଼ମା ଆଉ ଗୋଲ ଗୋଲ ଆକୃତି ଧରି ନେଇଥାଏ ଯେ ପଞ୍ଚାଏ ଜଗନ୍ନାଥ ମୂର୍ତ୍ତି ଶିଶୁଉଦ୍ୟାନକୁ ଅନେଇ, 'ହେଇ ହେଇ—ଗଲା ଗଲା—ଖାଇଲା ଖାଇଲା—ଗିଳିଲା ଗିଳିଲା' କହୁଥିବା ବେଳେ ଦୃଶ୍ୟଟା ଯେମିତି ଭୟଙ୍କର ଅଥଚ ହାସ୍ୟକର ଦିଶନ୍ତା, ପ୍ରାୟ ସେଇ ଅବସ୍ଥା ।

ଏ ଘଟଣା ଉତ୍ତାରେ ଦିନ କେତୋଟା ଶିଶୁଉଦ୍ୟାନ ଅଞ୍ଚଳ ପ୍ରାୟ ନିରୁପଦ୍ରବ ଭାବରେ କଟିଯିବାର ଜଣାଯାଇଥିଲା । ତେବେ ପ୍ରତିଦିନ ସ୍କୁଲ ଛୁଟିହେବା ପରେ ପିଲାମାନେ ପୂର୍ବେ ଯେଉଁଭଳି ଶିଶୁଉଦ୍ୟାନରେ ପ୍ରବଳ କୋଳାହଳପୂର୍ବକ ଦୈନନ୍ଦିନ ଖେଳକୌତୁକରେ ମାତି ଅଞ୍ଚଳଟିକୁ ଜୀବନ୍ତ କରି ରଖୁଥିଲେ, ସେଭଳି ସ୍ୱରଶବ୍ଦ ଆଉ ଶୁଣାଗଲା ନାହିଁ । ଶିଶୁଉଦ୍ୟାନର ଦୋଳି, ସି-ସ, ସ୍ଲାଇଡ଼ ପ୍ରଭୃତି ଯାବତୀୟ ଖେଳ ଉପକରଣଗୁଡ଼ିକ

ଏଣିକି ଏତେଦୂର ଅବ୍ୟବହୃତ ହୋଇପଡ଼ିଲା ଯେ ଉଦ୍ୟାନରକ୍ଷକ ବାଧ୍ୟ ହୋଇ ସେ ସବୁ ଉପକରଣର ସଦ୍‌ବ୍ୟବହାରାର୍ଥେ କେତେକ ଉପଯୁକ୍ତ ପଦକ୍ଷେପ ଗ୍ରହଣ କରିବାକୁ ମନସ୍ଥ କଲେ । କ୍ରମଶଃ ସହରର ଶିଶୁଉଦ୍ୟାନଟି ଏକ ଯୁବକଯୁବତୀ ଚିତ୍ତବିନୋଦନ କେନ୍ଦ୍ରରେ ପରିଣତ ହେବାପରି ମନେହେବାକୁ ଲାଗିଲା ।

କିନ୍ତୁ ଉଦ୍ୟାନରକ୍ଷକଙ୍କର ଏ ପଦକ୍ଷେପଦ୍ୱାରା ସମସ୍ୟାର କୌଣସି ସ୍ଥାୟୀ ପ୍ରତିକାର କରାଯାଇ ପାରିଥିଲା କି ନା ଏ ସମ୍ପର୍କରେ ସ୍ଥାନୀୟ ବାସିନ୍ଦାଙ୍କ ପକ୍ଷରୁ କାହାର କାହାର ମାନସିକ ଦ୍ୱନ୍ଦ୍ୱ ତଥାପି ସ୍ପଷ୍ଟତ ନିର୍ବାପିତ ହୋଇପାରି ନଥିଲା । ସମ୍ଭବତଃ ସେହି କାରଣରୁ ପ୍ରାକ୍ତନ ଶିଶୁଉଦ୍ୟାନ ଅଥବା ଅଧୁନାତନ ଯୁବ-ଯୁବତୀ ଚିତ୍ତବିନୋଦନ କେନ୍ଦ୍ରରେ ସେଦିନ ପୁଣି ଏକ ହଇଚଇ ଆରମ୍ଭ ହୋଇ ଅତ୍ୟନ୍ତ ଅସ୍ୱାଭାବିକଭାବେ ନଗରର ଆଞ୍ଚଳିକ ଶାନ୍ତି ବ୍ୟାହତ ହେଲା ।

"ସୁଷମା—ହାୟ ହାୟ—ସୁଷମାକୁ ରାକ୍ଷସ ରେପ୍ କରୁଛି, ରେପ୍ କରୁଛି... ଧାଇଁଆସ, ଧାଇଁଆସ...", ଏହିପରି ଆର୍ତ୍ତନାଦରେ ଅଞ୍ଚଳଟି ପ୍ରକମ୍ପିତ ହୋଇଉଠିଲା । ଏ ଆର୍ତ୍ତନାଦ ଶୁଣି ପୂର୍ବଥର ପରି ଆଖପାଖ ଘରୁ, ସରକାରୀ କ୍ୱାର୍ଟରରୁ ଲୋକେ ଗଦାହୋଇ ପଡ଼ିଲେ । ଏହା ବ୍ୟତୀତ ଅଫିସ ଫେରନ୍ତା ପଂଝା ପଂଝା କିରାଣୀ, ପିଅନ ଓ ଗ୍ରେଡ ବଡ଼ ଅଫିସର ସମେତ ଆହୁରି ଅନେକ ଦର୍ଶକ ମଧ୍ୟ ଘେରିଗଲେ । କିଛି ସମୟ ପରେ ଏକ ଦଳ ପୁଲିସ ସହିତ ସ୍ୱୟଂ ଥାନାବାବୁ ମଧ୍ୟ ହାଜର ହୋଇଗଲେ ଘଟଣାସ୍ଥଳରେ ।

କିନ୍ତୁ ନା ସୁଷମା ନା କୌଣସି ରାକ୍ଷସ, କାହାରି ଦର୍ଶନ ନ ପାଇ ଉପସ୍ଥିତ ଦର୍ଶକ ସମେତ ପୁଲିସ ମଧ୍ୟ ସହରର ଯୁବା ଯୁବତୀଙ୍କ ଉଦ୍ଦେଶ୍ୟରେ କେଇପଦ ଶାଳୀନ ଆକାଶ-ବାଣୀ ପ୍ରୟୋଗ ବ୍ୟତୀତ କେଉଁ ପ୍ରତିକାର ବା ବିଧାନ କରିପାରିଥାନ୍ତେ ଅଉ ?

ତେବେ ସେ ଯାହାହେଉନା କାହିଁକି, ସୁଷମା-ରେପ୍ ଘଟଣାର ସତ୍ୟାସତ୍ୟ ଅନୁସନ୍ଧାନ ଯେ ଏକ ସମୟସାପେକ୍ଷ ବ୍ୟାପାର ଏହା ଅନ୍ୟ କେହି ହୃଦୟଙ୍ଗମ ନକଲେ ମଧ୍ୟ, ସହରର ଯୁବକଯୁବତୀମାନେ ଖୁବ୍ ହୃଦୟଙ୍ଗମ କରିପାରିଥିଲେ ସେଦିନ । ଫଳତଃ, ଶିଶୁଉଦ୍ୟାନ ବା ଯୁବକଯୁବତୀ ଚିତ୍ତବିନୋଦନ କେନ୍ଦ୍ରଟି ଅଚିରେ ଏକ ନିର୍ଜନ ଶ୍ମଶାନବତ୍ ଦୃଶ୍ୟ ହେବାକୁ ବସିଥିଲା ପରଦିନଠାରୁ ।

ତଥାପି ଇତିମଧ୍ୟରେ ଉଦ୍ୟାନରକ୍ଷକଙ୍କ ପକ୍ଷରୁ ଅନ୍ୟ ଏକ ନୂତନ ଉଦ୍ୟମ ମଧ୍ୟ ଆରମ୍ଭ କରାଯାଇଥିବା ପରି ମନେହେଉଥିଲା ।

ଗତ କେତେବର୍ଷ ଧରି କେତେକ ବାର୍ଦ୍ଧକ୍ୟଭତ୍ତା ଦାବିକାରୀ ସ୍ଥବିର ଓ ବୃଦ୍ଧବ୍ୟକ୍ତି ସହରର ମୁଖ୍ୟ ଶାସକଙ୍କ ସମ୍ମୁଖରେ ବାରମ୍ବାର ଉପସ୍ଥିତ ହୋଇ ନିଜର ଦୁଃଖ ଓ ଦୁରବସ୍ଥା ଜ୍ଞାପନପୂର୍ବକ ସରକାରୀ ସାହାଯ୍ୟ ଭିକ୍ଷା କରୁଥିଲେ । ଅନ୍ୟାନ୍ୟ ଦାବିଗୁଡ଼ିକ

ଭିତରେ ସେମାନେ ମୁଖ୍ୟ ଶାସକଙ୍କୁ ନଗରାଞ୍ଚଳରେ ଏକ ଖଣ୍ଡ ପ୍ରଶସ୍ତ ଭୂମି ମଧ୍ୟ ଯାଚଜ୍ଞା କରିଥିଲେ ଓ ତହିଁରେ ପାଶ୍ଚାତ୍ୟ ଢଙ୍ଗରେ ଏକ ବାର୍ଦ୍ଧକ୍ୟ ଶିବିର ନିର୍ମାଣ କରାଇବା ଲାଗି ଯଥେଷ୍ଟ ଜିଗର କରିଥିଲେ ମଧ୍ୟ । ମୁଖ୍ୟ ଶାସକ ଗତ କେତେବର୍ଷ ଧରି ଏହି ସ୍ଥବିର-ମାନଙ୍କର ଅଭିଯାନ ଲାଗି ଅନେକ ପ୍ରତିଶ୍ରୁତି ଦେଇଆସୁଥିଲେ ମଧ୍ୟ କୌଣସି କାରଣରୁ ନିଜର ପ୍ରତିଶ୍ରୁତି ପାଳନରେ ଅପାରଗତାର ପ୍ରମାଣ ବହନ କରୁଥିବା ସତ୍ତ୍ୱେ ସେ ଦିଗରେ କୌଣସି ପଦକ୍ଷେପ କରିପାରି ନଥିଲେ ।

ନଗରର ଶିଶୁଉଦ୍ୟାନରେ ସୁଷମା-ରେପ୍ ଘଟଣା ସମ୍ବାଦପତ୍ରରେ ପ୍ରକାଶିତ ହେବା ପରେ ପରେ ଉଦ୍ୟାନରକ୍ଷକଙ୍କ ପକ୍ଷରୁ ଆଗତ ପ୍ରସ୍ତାବଟିର ପକ୍ଷ ବହନ କରି ସେଦିନ କେତେକ ବୃଦ୍ଧବ୍ୟକ୍ତି ମୁଖ୍ୟ ଶାସକଙ୍କ ଦରବାରରେ ପହଞ୍ଚି ଯାଇଥିଲେ ଓ ମୁଖ୍ୟଶାସକ ନଗରର ସ୍ଥବିରଙ୍କ ପାଇଁ ଅନ୍ୟ କିଛି ବ୍ୟବସ୍ଥା କରିବା ସମ୍ଭବ ନହେଲେ ଅନ୍ତତଃ ରାକ୍ଷସ ପ୍ରପୀଡ଼ିତ ସ୍ଥାନଟିକୁ ବୃଦ୍ଧାବସ୍ଥା ଉପଯୋଗୀ ଏକ ବାନପ୍ରସ୍ଥାଶ୍ରମରେ ପରିଣତ କରାଯାଉ ବୋଲି ଜିଦ୍ ଧରି ବସିଲେ ।

"ଆପଣମାନେ କ'ଣ ରାକ୍ଷସ ଭୟରେ ପ୍ରପୀଡ଼ିତ ନୁହନ୍ତି ?" ମୁଖ୍ୟ ଶାସକଙ୍କ ହସ ହସ ପ୍ରଶ୍ନଟାକୁ ବୃଦ୍ଧଲୋକେ ଅବଶ୍ୟ ପୂର୍ବରୁ ଆଶଙ୍କା କରିପାରିଥିଲେ ।

"ରାକ୍ଷସ ?" ବୃଦ୍ଧମାନଙ୍କର ସମ୍ମିଳିତ ହସ ମୁଖ୍ୟଶାସକଙ୍କୁ ସେଦିନ କିଭଳି ଶୁଣାଯାଇଥିଲା କେଜାଣି ।

ଏହାପରେ ନଗରର ଶିଶୁଉଦ୍ୟାନଟିର ଏକ ଆଶ୍ଚର୍ଯ୍ୟଜନକ ରୂପାନ୍ତର ଘଟିବବୋଲି ଉଦ୍ୟାନ ରକ୍ଷକ ଯେଉଁପରି ଆଶା କରିଥିଲେ ତାହାହିଁ ପରିଣତ ହୋଇଥିଲା ବାସ୍ତବରେ । ରାକ୍ଷସ ଭୟପ୍ରପୀଡ଼ିତ ଶ୍ମଶାନବତ୍ ନିର୍ଜନ ଉଦ୍ୟାନଟି ପୁନର୍ବାର ଉଜ୍ଜୀବିତ ହୋଇଉଠିଲା··· ଶିଶୁ ବା ଯୁବକଯୁବତୀଙ୍କ କୋଳାହଳ ପରିବର୍ତ୍ତେ ଦଳେ ବୃଦ୍ଧ ବୃଦ୍ଧାଙ୍କର ଗମ୍ଭୀର ଅଥଚ ମାଧୁର୍ଯ୍ୟବନ୍ତ ଉପସ୍ଥିତିରେ ।

ସମ୍ପୃକ୍ତ ନଗର ମଧ୍ୟସ୍ଥ ପ୍ରାକ୍ତନ ଶିଶୁଉଦ୍ୟାନର ଏ ରୂପାନ୍ତର ଯୋଗୁଁ ସ୍ଥାନୀୟ ଲୋକେ ଯେ ରାକ୍ଷସହାତରୁ ରକ୍ଷାପାଇ ସ୍ୱଚ୍ଛନ୍ଦରେ ଚଳପ୍ରଚଳ ହୋଇପାରିବେ ଓ ଏଣିକି ସ୍ଥାନଟି ଆବାଳବୃଦ୍ଧବନିତା ସମସ୍ତଙ୍କର ବ୍ୟବହାର ଉପଯୋଗୀ ଏକ ନିରାପଦ ତଥା ରମଣୀୟ ସ୍ଥାନରୂପେ ପରିଗଣିତ ହୋଇପାରିବ, ଏପରି ଆଶା କରିବାରେ ଅସ୍ୱାଭାବିକତା ବା ଥିଲା କ'ଣ ? ନଗରର ଶିଶୁଉଦ୍ୟାନ ଅଞ୍ଚଳରେ ଏଣିକି ଏଠି ବାଧାବନ୍ଧ ବୃଦ୍ଧୋଦ୍ୟାନ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ, ଏପରିକି ଦିନେ ଦିନେ ମଧ୍ୟରାତ୍ର ପର୍ଯ୍ୟନ୍ତ ରୀତିମତ୍ କୋଳାହଳମୟ ହୋଇଉଠିବା ଦୃଷ୍ଟିରୁ ସ୍ଥାନୀୟ ଲୋକେ, ବିଶେଷତଃ ନଗରର ରାକ୍ଷସଭୟାକ୍ରାନ୍ତ ନାଗରିକ-ଗଣ କ୍ରମଶଃ ଆଶ୍ୱସ୍ତ ଅନୁଭବ କଲେ । ଅନ୍ତତଃ ବର୍ଷଟିଏ ସମୟ ଅତ୍ୟନ୍ତ ସୁରୁଖୁରୁରେ ଅତିବାହିତ ହୋଇଗଲା ପରେ ତେଣିକି ନଗରର ଭୟାଳୁତମ ନାରୀକ ପକ୍ଷରେ

ମଧ୍ୟ ଏ ଅଞ୍ଚଳର ଶାନ୍ତିସୁରକ୍ଷା ସମ୍ବନ୍ଧେ କୌଣସି ଦୁଶ୍ଚିନ୍ତା ପୋଷଣର ସାମାନ୍ୟତମ ସୂତ୍ର ନଥିଲା ଆଉ । ସମ୍ଭବତଃ ଏଇ ସୁଯୋଗର ସଦୁପଯୋଗ ଲାଗି ଏଥିମଧ୍ୟରେ ମଝେ ମଝେ ନଗରର ମୁଖ୍ୟଶାସକଙ୍କ ପ୍ରଧାନ ବିରୋଧୀଦଳର ଦଳପତି ସଦଳବଳେ ଓ ଏକାନ୍ତ ନିର୍ଭୟରେ ପ୍ରବେଶ କରୁଥିଲେ ଉଦ୍ୟାନ ମଧ୍ୟରେ ଏବଂ ସାମ୍ପ୍ରତିକ ବହୁବହୁ ରାଜନୈତିକ ସମସ୍ୟା ଭିତରୁ ସର୍ବୋତ୍କୃଷ୍ଟ ଅର୍ଥାତ୍ ଦରଦାମ ବୃଦ୍ଧି, ଅଥବା ୧୦ + ୨ + ୩, ଅଥବା ତତ୍ତୁଲ୍ୟ ଅନ୍ୟଏକ ସମସ୍ୟା ଅର୍ଥାତ୍ ଦେଶରେ ନାରୀଧର୍ଷଣଜନିତ ଅପରାଧର ମାତ୍ରାବୃଦ୍ଧି ସମ୍ପର୍କରେ ଏକାଧିକ ଆଲୋଚନାଚକ୍ରମାନ ଚଳାଇ ନେବାର କେତେକ ସୁବିଧା ମଧ୍ୟ କରିପାରିଥିଲେ ।

କିନ୍ତୁ ବିରୋଧୀ ଦଳର ଏ ସୁବିଧାକୁ ଅଚିରେ ପଣ୍ଡ କରିଦେବା ଉଦ୍ଦେଶ୍ୟରେ ହେଉ ବା ଅନ୍ୟ କୌଣସି ପ୍ରାକୃତିକ ଅଥବା ଅପ୍ରାକୃତିକ କାରଣରୁ ହେଉ, ସତେ ଠିକ୍ ପର୍ଯ୍ୟାପ୍ତ ସମୟରେ ରାକ୍ଷସର ପୁନରାବିର୍ଭାବ ଘଟିଲା—ନଗରର ଏଇ କେନ୍ଦ୍ରସ୍ଥଳ ବା ଅଧୁନା ବୃଦ୍ଧୋଦ୍ୟାନ ନାମରେ ନାମିତ ସ୍ଥାନଟିର ଚୌହଦୀ ଅନ୍ତର୍ଗତ ବୃକ୍ଷଲତାଗୁଳ୍ମକର ଅନ୍ତରାଳରେ ।

"ରାକ୍ଷସ ! ରାକ୍ଷସ !..." ବୃଦ୍ଧୋଦ୍ୟାନର ବୃଦ୍ଧବୃଦ୍ଧାଙ୍କର ସମ୍ମିଳିତ କୋଳାହଳ ଉପରେ ସେଦିନ ଅନ୍ୟ ଏକ ଆତଙ୍କବାଣୀ, କାହାର କେଜାଣି, ଏପରି ଭୟଙ୍କର ଭାବେ ଆରୋହଣ କରି ନିକଟସ୍ଥ ଅଞ୍ଚଳକୁ ଆଚ୍ଛନ୍ନ କରି ବସିଲା ଯେ ସ୍ୱଳ୍ପସମୟ ପାଇଁ ଆଖପାଖ ଅଞ୍ଚଳରେ ଏକ ବିଚିତ୍ର ସ୍ତବ୍ଧତା ବିରାଜମାନ କରିବା ବ୍ୟତୀତ ହଠାତ୍ କୌଣସି ଆଶୁ ପ୍ରତିକ୍ରିୟା ପ୍ରକାଶର କୌଣସି ସୂଚନା ପରିଦୃଷ୍ଟ ହେଲାନାହିଁ । ଫଳତଃ ବୃଦ୍ଧୋଦ୍ୟାନର ପରିସୀମା ମଧ୍ୟରେ ଆବଦ୍ଧ ଅଧିକାଂଶ ଅସହାୟ ଅବସରବିନୋଦନକାରୀ ନରନାରୀ ରାକ୍ଷସର ପ୍ରତ୍ୟକ୍ଷ ଆୟତ୍ତାଧୀନ ଭାବେ ଅନ୍ୟୁନ ଦଶ ପନ୍ଦର ମିନିଟ୍ ଘାଣ୍ଟିଚକଟି ହୋଇଯିବା ଭିତରେ ପ୍ରାୟ ଦଶ ପନ୍ଦର ଜଣ ବୃଦ୍ଧବୃଦ୍ଧାଙ୍କ ସମେତ୍ କେତୋଟି ଶିଶୁ ଓ ଗୋଟିଏ ଯୋଡ଼ିଏ ବୁଲା କୁକୁର ମଧ୍ୟ ମୁମୂର୍ଷୁ ବା ମୃତ ଅବସ୍ଥାରେ ଭୂପତିତ ହୋଇଥିବା ସମ୍ବାଦ ପରେ ନଗରବାସୀଙ୍କ କର୍ଣ୍ଣଗୋଚର ହେବା ବ୍ୟତୀତ ଗତ୍ୟନ୍ତର ବା ଥିଲା କାହିଁ ?

ଏହି ଦୁର୍ଘଟଣାର ଅବ୍ୟବହିତ ପରେ ଉଦ୍ୟାନରକ୍ଷକଙ୍କ ଏକ ସୁପରିକଳ୍ପିତ ଏବଂ ସୁନିର୍ଦ୍ଦିଷ୍ଟ ପ୍ରସ୍ତାବ ନଗରର ମୁଖ୍ୟଶାସକଙ୍କ ବିଗ୍ରହାର୍ଥେ ଆନୀତ ହୋଇଥିବା ସମ୍ବାଦର ସତ୍ୟତା ପରୀକ୍ଷା ଲାଗି ନଗରବାସୀମାନେ ଉତ୍କଣ୍ଠିତ ହୋଇ ବସିରହିଥିଲେ । କେହି କେହି ପ୍ରସ୍ତାବଟିକୁ ସାଦରେ ସମର୍ଥନ କରି ଛକକାଗାମାନଙ୍କରେ କ୍ଷୁଦ୍ର କ୍ଷୁଦ୍ର ଆଲୋଚନାଗୋଷ୍ଠୀ କରିଆରେ ମତାମତ ପ୍ରଦାନ କରିବାରେ ଲାଗିଲେ ଓ ମୁକ୍ତକଣ୍ଠରେ କହୁଥିଲେ, "ଠିକ୍ ଠିକ୍—ଜାଗାଟାକୁ ଗୋଟାଏ ଶ୍ମଶାନ କରିବା ଛଡ଼ା ଅନ୍ୟ କୌଣସି ମହତ୍ କାର୍ଯ୍ୟରେ ଲଗାଯାଇନପାରେ । ଉଦ୍ୟାନରକ୍ଷକଙ୍କ ମହତ୍ ପ୍ରସ୍ତାବକୁ

ମୁଖ୍ୟଶାସକ ଯେ ନିଶ୍ଚୟ ସ୍ୱୀକୃତ ଦେବେ—ଏହା ନିଃସନ୍ଦେହରେ କୁହାଯାଇପାରେ । ସେଉଁଠି ରାକ୍ଷସର ପ୍ରାଦୁର୍ଭାବ ଏତେ ପ୍ରବଳ ଯେ ପିଲେ ଖେଳି ପାରୁଲେ ନାହିଁ, ଟୋକାଟୋକି ଚଳପାରୁଲେ ନାହିଁ, ବୁଢାବୁଢ଼ୀ ଦଳାଚକଟାରେ ମଲେ—ସେ ଜାଗାଟାକୁ ରାକ୍ଷସ, ଦୈତ୍ୟ, ଅସୁର, ଭୂତପ୍ରେତଙ୍କ ଲାଗି ଉତ୍ସର୍ଗ କରିବା ବ୍ୟତୀତ ଅନ୍ୟ କ'ଣ ବା କରାଯାଇପାରେ !"

ନଗରର ଛକମୁଣ୍ଡରେ ଏହିପରି ଆଲୋଚନା ଚାଲୁଥିବାବେଳେ ମୁଖ୍ୟଶାସକ ସମ୍ପୃକ୍ତ ଫାଇଲ୍ ଉପରେ ଏକ କିମ୍ଭୂତ ଅର୍ଡ଼ର ଦେଇ ନିମ୍ନରେ ନିଜର ସହିମୋହର ଦରଜ କରିସାରିଥିଲେ—

"ଉଲ୍ଲିଖିତ ଶିଶୁଉଦ୍ୟାନଟିକୁ ରାକ୍ଷସଙ୍କୁ ବନ୍ଦୀସୂତ୍ରରେ ପ୍ରଦାନ କରିଦିଆଯାଉ ।"

ମୁଖ୍ୟଶାସକଙ୍କ ଉପରୋକ୍ତ ଆଦେଶନାମା ଅଚିରେ କାର୍ଯ୍ୟକାରୀ କରାଯାଇଥିଲା ।

ଦିନ କେତେକ ଅନ୍ତରରେ ସହରର ଶିଶୁଉଦ୍ୟାନ ଅନ୍ତରାଳରେ କେତେକ ଇଟା ବାଲି ସିମେଣ୍ଟ୍ ଓ ଛଡ଼ ପରିବହନକାରୀ ଟ୍ରକ୍‌ର ଅବାରିତ ଚଳପ୍ରଚଳ ଲକ୍ଷ୍ୟକରି ପାରିଥିଲେ ସ୍ଥାନୀୟ ଲୋକେ ।

ପ୍ରାୟ ଦୁଇବର୍ଷ ଅନ୍ତରରେ ଏକ ସୁରମ୍ୟ ଅଟ୍ଟାଳିକା ଓ ତତ୍‌ସଂଲଗ୍ନ ଦଶଏକର-ବ୍ୟାପୀ ପୁଷ୍ପବାଟିକାର ଆବିର୍ଭାବ ହେତୁ ସ୍ଥାନୀୟ ଲୋକେ ଅତ୍ୟନ୍ତ କୌତୂହଳବଶତଃ ଏ ସମ୍ପତ୍ତିର ଯଥାର୍ଥ ମାଲିକଙ୍କର ପରିଚୟ ପାଇବା ନିମିତ୍ତ ବ୍ୟାକୁଳ ହୋଇଉଠିଥିଲେ ।

କିନ୍ତୁ ସେମାନଙ୍କର କୌତୂହଳ କିଛିକାଳ ନିବାପିତ ନହେଲା ପରେ ଅଟ୍ଟାଳିକା ସମ୍ମୁଖସ୍ଥ ବିଡା ଫାଟକ ଖୁଣ୍ଟରେ ଏକ ମାର୍ବଲ ଫଳକରେ ଅଦ୍ଭୂତ ନାମୋଲ୍ଲେଖଟିଏ ସମସ୍ତଙ୍କର ଦୃଷ୍ଟିଗୋଚର ହେଉଥିଲା । ସେଥିରେ ଲେଖାଥିଲା—"... ଅବସରପ୍ରାପ୍ତ X, Y, Z,"

——

# କାଲ୍ ଇଣ୍ଟରଭ୍ୟୁ

ପୂର୍ବାହ୍ଣ ଏଗାରଟାରୁ ଅପରାହ୍ଣ ସାଢ଼େଚାରି ଯାକେ ସେଦିନ ଯେଉଁ ବିରାଟ ଇଣ୍ଟରଭ୍ୟୁ ପର୍ବଟା ଚାଲିଥିଲା ତାର ପରିସମାପ୍ତି ହୋଇ ଫଳ ବାହାରିବା ବେଳକୁ ସନ୍ଧ୍ୟା ଛ'।

"ସାର୍, ପ୍ରାର୍ଥୀମାନଙ୍କୁ କହିଦେବାକି ଫଳାଫଳଟା ?" ସାନ ଅଫିସର୍ ଅତି ସନ୍ତର୍ପଣରେ ବଡ଼ ଅଫିସରଙ୍କ ମୁଖମଣ୍ଡଳର କୌଣସି ଏକ ପରିଚିତ କୁଞ୍ଚକୁଞ୍ଚିଆ ରେଖାକୁ ବହୁ ଦିନରୁ ପରୀକ୍ଷା ନିରୀକ୍ଷା କରିସାରି ଭରସି କରି ପଚାରୁଥାନ୍ତି ସେଇମାତ୍ର। କିନ୍ତୁ ଠିକ୍ ସେତିକିବେଳେ ବଡ଼ ଅଫିସରଙ୍କ ଡେସ୍କ୍ କଡ଼ପଟକୁ ରଖାଯାଇଥିବା ଟେଲିଫୋନ୍‌ଟା ବାଜିଉଠିଲା, ଆଉ ପରମୁହୂର୍ତ୍ତରେ ବଡ଼ ଅଫିସରଙ୍କ ମୁଖମଣ୍ଡଳର ରେଖାଙ୍କିତ ଭାବସମୁଦ୍ରରେ ଏକ ପ୍ରଗାଢ଼ ଲହରୀ ଉଦ୍‌ବେଳିତ ହୋଇଉଠିଲା।

ସାନ ଅଫିସର୍ ଶଙ୍କିଗଲେ। ଆଉ ସେହିପରି ଶଙ୍କିତ ଅବସ୍ଥାରେ ବଡ଼ ଅଫିସରଙ୍କ ଟେଲିଫୋନ୍ କଥାବାର୍ତ୍ତା ଶୁଣି ଶୁଣି ସ୍ଥାଣୁ ପାଲଟିଗଲେ। କଥାବାର୍ତ୍ତାର ବାହ୍ୟ ରୂପଟି ଥିଲା ଏହିପରି—

"........."

"ୟେସ୍ ସାର୍...ହଁ ସାର୍...ନିଶ୍ଚୟ ସାର୍..."

"........."

"ୟେସ୍ ସାର୍, ହଁ ସାର୍...ପ୍ରାୟ ଚାଳିଶ କ୍ୟାଣ୍ଡିଡେଟ୍ ସାର୍..."

"........."

"ୟେସ୍ ସାର୍, ହଁ ସାର୍...କାମ ଠିକ୍ ଠିକ୍ ଚାଲିଲା ସାର୍"

"........."

"ୟେସ୍ ସାର୍ ହଁ ସାର୍, ମିସନ୍ ଆକଂପ୍ଲିସ୍‌ଡ୍...ମାନେ..."

"........."

"ୟେସ୍ ସାର୍, ହଁ ସାର୍, ସମସ୍ତେ ଫେଲ୍...କଟିଗଲେ...କଂପଲିଟ୍ ଲିଷ୍ଟ୍‌ରୁ କେହି ଜଣେହେଲେ ବି ଯୋଗ୍ୟ..."

"........."

"ୟେସ୍ ସାର୍, ହଁ ସାର୍, ପ୍ରଶ୍ନ ଯଥାରୀତି ପଚାରିଲେ । ବଡ଼ ସିମ୍ପଲ୍ କୋଶ୍ଚିନ୍ ସାର୍…କେହି ସାଟିସ୍‌ଫାଏ କରିପାରିଲେ ନାହିଁ ଆମକୁ…"

"……"

"ୟେସ୍ ସାର୍…ଗୋଟାଏ ବୋର୍ଡ଼ କରାଯାଇଥିଲା…ବୋର୍ଡ଼ରେ ମୁଁ ତ ଡାଇରେକ୍ଟର୍‌ଭାବେ ଚେୟାରମ୍ୟାନ୍ ସାର୍, ତାଛଡ଼ା ଆମ ଅଫିସ୍‌ର ଜେନେରାଲ୍ ସେକ୍ରେଟେରୀ, ଫାଇନାନସ୍ ଅଫିସର୍ ଆଉ ଦୁଇଜଣ କ୍ଲାସ୍ ୱାନ୍ ଅଫିସର୍ ସାର୍…"

"……"

"ୟେସ୍ ସାର୍…ୟେସ୍‌ଏସ୍ ସାଆଆର୍ ହି ହି ହି…ସମସ୍ତେ କଟିଗଲେ—ଅଲ ଦି ଫର୍ଟିଆଣ୍ଡ ଆଡ୍ କ୍ୟାଣ୍ଡିଡେଟ୍‌ସ୍…ଆଃ, ଫେଲୁଗୁଡ଼ିକ ଗାଉଁଲିଲୋକ ସାର୍…ମାଇଁ ଗଡ୍ ! କି କରୁଣ ମୁହଁଗୁଡ଼ାଏ ସାର୍…ନୋ ନୋ ସାର୍, ନୋ ନୋ, ନେଭର୍ ! ଏମିତି ବ୍ୟାପାରରେ ଦୟାମାୟା ଗୋଟାଏ କଅଣ ସାର୍ ?

"……"

"ୟେସ୍,ସାର୍ ହଁ ସାର୍…ଶୁଣିବାରୁ ଅନ୍ତତଃ କୋଡ଼ିଏ ବାଇଶି ଆଦିବାସୀ ହରିଜନ କ୍ୟାଣ୍ଡିଡେଟ୍ ଥିଲେ ସାର୍…"

"……"

"କିନ୍ତୁ ସାର୍, ନୋ ନୋ ସାର୍,…ନଟ୍ ଏ ସିଙ୍ଗଲ୍ ଓ୍ୱାନ୍…ଜଣେ ହେଲେ କେହି ସାଟିସ୍‌ଫାଏ କରିପାରିଲେ ନାହିଁ ବୋର୍ଡ଼କୁ ଯେ । ସାର୍ ? କଅଣ କହିଲେ ସାର୍ ? କନ୍ଦାକଟା ? ହା ହା ହା…ପରୀକ୍ଷା ସାମନାରେ କନ୍ଦାକଟା ଆଉ କ'ଣ ? ତେବେ, ୟେସ୍ ସାର…ଗୋଟାଏ କାଳିଆ ହେଇ ବସନ୍ତମୁହାଁ ଲୋକ, ବୟସ ୩୦।୩୨ କି ବେଶୀ ବି ହେଇପାରେ…କାନ୍ଦିଲା, ଖୁବ୍ କନ୍ଦାକଟା କଲା ବୋର୍ଡ଼ ଆଗରେ । କହିଲା…"

"……"

"ୟେସ୍ ସାର୍…ହରିଜନ ସମ୍ପ୍ରଦାୟର ଲୋକଟା…ବଡ଼ ପ୍ୟାଥେଟିକ୍ ଚେହେରା ଯେ…କହିଲା କୁଆଡ଼େ ଚଉଦ ଥର…ୟେସ୍ ସାର୍ ଚ…ଉ…ଦ, ମାନେ ଫୋର୍ଟିନ୍ ଟାଇମସ୍ ସେ ଆପିଅର୍ କଲଣି ଇଣ୍ଟରଭ୍ୟୁରେ…ନା ସାର୍, ଆମ ଅଫିସ୍‌ରେ ନୁହେଁ… ବିଭିନ୍ନ ଅଫିସ୍‌ରେ ତା ନାଁ ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜରୁ ଚଉଦ ଥର ରେକମେଣ୍ଡ ହେଇସାରିଲାଣି ସାର୍ । କିନ୍ତୁ ହାଃ ହାଃ…ଶୁଣିକରି କାହିଁ ସାର୍ ? ଶୁଣିକରି କାହିଁ ? ବିଚରା କାନ୍ଦିଲା ଖୁବ୍, ଆଉ କହିଲା—ବୋଧହୁଏ ଏମ୍ପ୍ଲୟମେଣ୍ଟରୁ ଆଉ ପଠାଯିବ ନାହିଁ ତା ନାଁ ଏହା ପରେ…"

"……"

"ହାଃ, ହାଃ, ହାଃ…ଆଉ କାହିଁକି କହୁଚନ୍ତି ସାର୍ ! ବଡ଼ ପାଥେଟିକ୍, ବଡ଼ ହାର୍‌ସିଂ ଏମିତି କାମ ସାର୍ ! କିନ୍ତୁ କ'ଣ କରାଯିବ ସାର୍ ? ଆମକୁ ଏକ୍‌ଜିକ୍ୟୁଟ

କରିବାକୁଇ ପଡ଼ିବ । ଏ'ତ ଆମ ବୃକରର ନିୟମ, ସାର୍, । ବୃକଲିଷ୍ଟ ଗ୍ରୁପ୍ ଅଁନ୍ କ୍ରେନ୍ କ୍ୟାଣ୍ଡିଡ଼େଟ୍ ଆସିଥିଲେ ମଧ୍ୟ ସେମିତି କରିଆସେ, ସାର୍ । ଆମ ବୋର୍ଡ଼...''

''......''

''ନୋ ସାର୍, ନୋ ସାର୍...ଆମ ବୋର୍ଡ଼ର କେବଳ ମୁଁ ଆଉ ଆମ ସେକ୍ରେଟେରୀଙ୍କ ଛଡ଼ା କେହି ଜାଣନ୍ତି ନାହିଁ...ସବୁ ସିକ୍ରେଟ୍...ଅବସଲ୍ୟୁଟ୍ ସିକ୍ରେସି ସାର୍...''

''......''

''ୟେସ୍ ସାର୍, ଥ୍ୟାଙ୍କ୍ୟୁ ସାର୍, ନମସ୍କାର ।''

ଏହା ପରେ ଟେଲିଫୋନ୍ ରିସିଭରଟାକୁ କ୍ରାଡ଼ଲ୍ ଉପରେ ଦୁମ୍ କରି ଥୋଇଦେଇ ଉଠିପଡ଼ିଲେ ବଡ଼ ହାକିମ । ତାଙ୍କ ମୁଖମଣ୍ଡଳରେ ବର୍ତ୍ତମାନ ପ୍ରଗାଢ଼ ଆଶ୍ୱସ୍ତି ଫେରି ଆସିବାର କଥା । କିନ୍ତୁ କୌଣସି କାରଣରୁ ଲୋକଟାର ମୁହଁ ଉପରେ ଗୋଟାଏ ବୁଢ଼ିଆଣୀ ବସା ବାନ୍ଧିଲା ଭଳି ଗୁଡ଼ାଏ ସରୁ ମୋଟ ରେଖା ଏକ ନିର୍ଦ୍ଦିଷ୍ଟ ପ୍ୟାଟର୍ଣ୍ଣରେ ଆବିର୍ଭୂତ ହୋଇସାରିଥିବା ଦେଖି ସାନ ଅଫିସର୍ ଚମକିପଡ଼ିଲେ ।

''ନରେନ୍ ବାବୁ !'' ବଡ଼ ହାକିମ ଅର୍ଥାତ୍ ବୋର୍ଡ଼ର ଡାଇରେକ୍ଟର ସାରା ଦିନ ଭିତରେ ସେଇ ମାତ୍ର ପ୍ରଥମ ଥର ସାନ ହାକିମ ଅର୍ଥାତ୍ ବୋର୍ଡ଼ର ସାଧାରଣ ସମ୍ପାଦକଙ୍କ ନାଁ ଧରି ଅତି ଅନ୍ତରଙ୍ଗ ସ୍ୱରରେ କ'ଣ କହିବା ପାଇଁ ଚେଷ୍ଟା କରି ଆସୁଥିଲେ ସମ୍ଭବତଃ । କିନ୍ତୁ ପରମୁହୂର୍ତ୍ତରେ ତାଙ୍କ ସ୍ୱରର ଅନ୍ତରଙ୍ଗତା ପରିବର୍ତ୍ତେ ବହିରଙ୍ଗତାହିଁ ଆପଣାକୁ ଜାହିର କରି ବସିଲା—''ଇଟ୍ ଇଜ୍ ଅଲ୍ ଏ କ୍ଲୋଜ୍‌ଲି ଗାର୍ଡ଼େଡ଼୍ ସିକ୍ରେଟ୍—କାରଣ ମିନିଷ୍ଟରଙ୍କ କ୍ୟାଣ୍ଡିଡ଼େଟ୍‌ଟିର ନାଁ ଯଦି ନେକ୍ସ୍ଟ ଇଣ୍ଟରଭ୍ୟୁକୁ ନ ଆସେ ଏମ୍ପ୍ଲୟମେଣ୍ଟ୍ ଏକ୍ସଚେଞ୍ଜରୁ, ତେବେ ଆମକୁ ପୁଣିଥରେ ରିଜେକ୍ଟ କରିବାରେ ପଡ଼ିବଇ ପଡ଼ିବ ଏଣ୍ଟାୟାର୍ ଲିଷ୍ଟକୁ । ଆଉ ହଁ—ଆପଣ ତରବର ହ'ନ୍ତୁନାହିଁ ଆଜିର ରେଜଲ୍ଟ ଡିକ୍ଲେୟାର କରିଦେବାକୁ । ରେଜଲ୍ଟ ତ ବାହାରିବଇ ବାହାରିବ । ଲେଟ୍ ଅସ୍ ଟେକ୍ ଏ ଓ୍ୱିକସ୍ ଟାଇମ୍ ଫର୍ ଦ୍ୟାଟ୍ । ତେବେ ଆପଣ କାଲି ଫାଷ୍ଟ ଆଓ୍ୱାରରେ ଲୋକାଲ ଏମ୍ପ୍ଲୟମେଣ୍ଟ୍ ଏକ୍ସଚେଞ୍ଜ୍‌କୁ ଲେଖିଦିଅନ୍ତୁ—ଆଉ ଥରେ ଆଉ ଏକ ବ୍ୟାଚ୍ ନାଁ ପଠେଇବାକୁ—ବୁଝିଲେ ତ ?''

ଅଫିସ୍‌ର ସାଧାରଣ ସମ୍ପାଦକ ନରେନ୍ ସାମନ୍ତରାୟ ତାଙ୍କ ଉପର ହାକିମ ବୋର୍ଡ଼ର ଡାଇରେକ୍ଟରଙ୍କ ମୁହଁ ଉପରେ ଉଦୟ ହୋଇ ସାରିଥିବା ସେଇ ବୁଢ଼ିଆଣୀଟି ବସିରୁ କେଉଁଠି କେବଳ ଦେଇଥିଲୁ ନିରୀକ୍ଷଣ କରୁ କରୁ ଅତ୍ୟନ୍ତ ଅସତର୍କ ହୋଇ କହି ପକାଇଲେ—''ସାର୍, କେବଳ ଏମ୍ପ୍ଲୟମେଣ୍ଟକୁ ଲେଖିଲେ କିଛି ହେବ ନାହିଁ । ମନ୍ତ୍ରୀଙ୍କୁ କହିବାକୁ ହବ, ତାଙ୍କ କ୍ୟାଣ୍ଡିଡ଼େଟ୍‌ର ନାଁ ଯେ କୌଣସି ପ୍ରକାରେ ଏଥରକର ଲିଷ୍ଟରେ ସେ ପୂରାନ୍ତୁ, ନଚେତ୍...''

"ନରେନ୍ ?" ନରେନ୍‌ର ଉପର ହାକିମଙ୍କ ମୁହଁ ଉପରେ ଆବଦ୍ଧ ଜାଲର କଣ୍ଠା ବା କଣ୍ଠୀ ବୁଢ଼ିଆଣି ହଠାତ୍ ସେତିକିବେଳେ ତାଙ୍କର ବାଁ ଆଖି ଚଷମା କାଚତଳୁ ନରେନ୍‌ର ମୁହଁ ଉପରକୁ ସିଧା ଡେଇଁପଡ଼ିଲା ଓ ତତ୍‌କ୍ଷଣାତ୍ ନରେନ୍ ଅନୁଭବ କଲା ତା ନିଜ ମୁହଁ ଉପରେ ଚଟାପଟ୍ ଚଟାପଟ୍ ଏକ ସୂକ୍ଷ୍ମ ବୁଢ଼ିଆଣୀ ଜାଲର ବନ୍ଧନ।

"ନରେନ୍...ନରେନ୍ ଏ ଅଫିସିଆଲ୍ ସିକ୍ରେସି ଆଉ ରକ୍ଷା କରିବା ସମ୍ଭବ ହେବ ନାହିଁ ସାର୍! ଆପଣ ଦେଖନ୍ତୁ, ମାତ୍ର ଜଣେ କ୍ୟାଣ୍ଡିଡେଟ୍‌ର ନାଁ ଲିଷ୍ଟରେ ନାହିଁ ବୋଲି ଆମକୁ ବାରମ୍ବାର ରିଜେକ୍ଟ କରିବାକୁ ପଡୁଛି ଶହଶହ ପଚିଶ କ୍ୟାଣ୍ଡିଡେଟ୍‌ଙ୍କୁ। ଏ କାମ ଘୋର ଅଧର୍ମ...ମହାପାପ ସାର୍! ଶହଶହ ଲୋକଙ୍କ ନିଃଶ୍ୱାସ ଅଜି ଦିନସାରା ଆମ ଉପରେ ପଡ଼ୁଥାଉଛି ସାର୍। ବିଶେଷତଃ ସେ କଳା, ବସନ୍ତମୁହାଁ, ଧେଡ଼େଙ୍ଗା ହରିଜନ ଲୋକଟା—ଯେ ଚଉଦ ଥର କଟି ସାରିଲାଣି ସାର୍—ଚଉଦଟା ଇଣ୍ଟରଭ୍ୟୁରେ—ଆମ ଅଫିସ୍‌ର ଏ ଯୋଉ ଟ୍ରିକ ଆମେ ପ୍ରୟୋଗ କଲେ, ଯେମିତି ଚଉଦଟା ଅଫିସରେ ତାକୁ ଚଉଦଥର ଚଟ୍ କରାଗଲା ପରେ—ସେ ଲୋକର ମୁହଁ, ଆଖି, କାନ୍ଦ, ନିଃଶ୍ୱାସ—ସବୁକୁ ମାର୍କ କରିଥିବେ ନିଶ୍ଚୟ ଆପଣ...ସାର୍! ସେ ନିଃଶ୍ୱାସ ପଡ଼ିଯିବ ଆମ ଉପରେ ସାର୍..."

"ପଡୁ—" ନରେନ୍‌ର ଉପର ହାକିମ ତାଙ୍କର ଦିନକର କାମ ଶେଷ କରି ଘର ମୁହାଁ ଧରି ଆସିବା ଯୋଗୁ କିମ୍ବା ଅନ୍ୟ କୌଣସି କାରଣରୁ ଟିକିଏ ଲାଇଟ୍ ମୁଡ୍‌ରେ ହସଟିଏ ହସିଲେ ଆଉ କହିଲେ, "ସାମାନ୍ୟ ପିଅନ ପୋଷ୍ଟଟ ଏ ତ ନା ଆଉ କ'ଣ! ଗୋଟାଏ ପିଅନ୍‌ର ନିଃଶ୍ୱାସରେ ଏମିତି କେତେ ଆଉ ତାତି ଥିବ ନରେନ୍ ବାବୁ! ଆପଣ ଡରୁଚନ୍ତି ବୃଥାରେ। ତେବେ ଯଦି ସେ ନିଃଶ୍ୱାସରେ ତାତିଥିବ ପ୍ରକୃତରେ ତେବେ ସେ ତାତି ପଡ଼ିବ ମନ୍ତ୍ରୀଙ୍କ ଉପରେ!"

"ନୋ ସାର୍—ଅତଏବ ଆଜିର ଇଣ୍ଟରଭ୍ୟୁର ସମ୍ମିଳିତ ନିଃଶ୍ୱାସ ପଡ଼ିବ ସମସ୍ତଙ୍କ ଉପରେ ନୁହେଁ, ଆପଣଙ୍କ ଉପରେ, ମୋ ଉପରେ, ଆମ ଉପରେ ସାର୍!" ନରେନ୍ ତା ପକେଟରୁ ଖଣ୍ଡେ ଝାଳ ଜୁଡ଼ୁବୁଡ଼ୁ, ଓଦା ଆଉ ଦୁର୍ଗନ୍ଧଆ ରୁମାଲ୍ ଟାଣି ଆଣିଲା ଓ ଦିନକ ଭିତରେ ସହସ୍ରାଧିକ ଥର ପାଇଁ ନିଜର ଝାଳୁଆ ମୁହଁକୁ ପୋଛୁ ପୋଛୁ କହିଲା—"ଆପଣ ଆଉ ମୁଁ ନିଜ ନିଜ ଭିତରେ କରନ୍ତୁ ଏ ଷଡ଼ଯନ୍ତ୍ର ସାର୍! ଏଥିରେ ମନ୍ତ୍ରୀ ନାହାନ୍ତି। ସେ ତ ନିର୍ଦ୍ଦୋଷ, ସଚ୍ଚୋଟ। ତାଙ୍କୁ ମନ୍ତ୍ରୀମଣ୍ଡଳର ସବୁଠୁ ସାଧୁ ଅନେଷ୍ଟ୍ ଲୋକ ବୋଲି ଜାଣନ୍ତି ସମସ୍ତେ—ସେ କାହିଁକି ରହିବେ ଏଥିରେ? ଇଣ୍ଟରଭ୍ୟୁ ଆରମ୍ଭରୁ ତାଙ୍କ ପ୍ରାଇଭେଟ୍ ସେକ୍ରେଟେରି ଖାଲି ଏତିକି କହିଥିଲେ ଆମକୁ ଫୋନ୍ ଉପରେ—ଅମୁକ ଲୋକ ଆଡ଼ହକ୍ ବେସିସ୍‌ରେ ପିଅନ ପୋଷ୍ଟରେ ଅଛି ଅଲ୍‌ରେଡ଼ି ଆପଣଙ୍କ ଅଫିସ୍‌ରେ, ଆଉ ଦେଖନ୍ତୁ ଏମ୍ପ୍ଲୟମେଣ୍ଟ୍ ଏକ୍ସଚେଞ୍ଜ୍ ତା ନାଁ ପଠାଇ ପାରିନାହିଁ ଆଜିର ଇଣ୍ଟରଭ୍ୟୁକୁ—ବାସ୍ ଏତିକି। କିନ୍ତୁ ଏହା ପରେ ଶହେଜଣ ଲୋକଙ୍କୁ ଏଲିମିନେଟ୍ କରିବାର ଦାୟିତ୍ୱ ପଡ଼ିଲେ ଆମ ଉପରେ।"

"ଓଃ, ସେଗୁଡ଼ାକ ବିଷୟରେ ଚିନ୍ତା କରନ୍ତୁ ନା ଏତେ—ସା'ନ୍ତୁ, ଗାଧୁଆପାଧୁଆ କରିବେ···ଯଦି ପାରନ୍ତି ଲିଙ୍ଗରାଜ ଦର୍ଶନ ମଧ୍ୟ କରି ଆସନ୍ତୁ ଆଜି ସନ୍ଧ୍ୟାରେ !" ବୋର୍ଡ଼ର ଡାଇରେକ୍ଟର ଏହିପରି ପ୍ରବୋଧ ଦେଉ ଦେଉ ନରେନ୍‌ର ମୁହଁକୁ ବିସ୍ମୟ ସହିତ ଥରେ ଅନାଇ ଦେଇ ଚମକିପଡ଼ିଲେ ଆଉ କହିଲେ, "ମାଇଁଗ ଡ଼୍ ! ନରେନ୍ ! ତମ ମୁହଁରେ ଗୋଟାଏ ବୃଚିଆଣୀ ବସା ବାନ୍ଧି ଗୁଲିଚ ଯେ !"

ନରେନ୍ ଆଉଥରେ ଜୋର୍ କରି ମୁହଁକୁ ରୁମାଲରେ ଘଷିପକେଇ କହିଲା, "ସାର୍, ଏ ବୃଚିଆଣୀ ଆପଣଙ୍କ ମୁହଁରୁଇ ଡେଇଁଚି ମୋ ଉପରକୁ । ଆଚ୍ଛା କୁହନ୍ତୁ ତ ସାର୍, ସେ କୋଣ୍ଡିନ୍‌ଟା ଆପଣଙ୍କ ମୁଣ୍ଡକୁ ଜୁଟିଲା କେମିତି ଏତେ ସହଜରେ ! ବଡ଼ ଆପ୍ରୋପ୍ରିଏଟ୍ କୋଣ୍ଡିନ୍ ସାର୍ ! ଦେଖିଲେ ନା—ଗୃଇଲଣିଟାଯାକ ଲୋକ କେମିତି ସେଇ ଏକ ପ୍ରକାର ଭୁଲ୍ କରିଗଲେ ! ଟେଲିଫୋନ୍ ରିସିଭର୍‌ଟାକୁ କେମିତି ଧରିବାକୁ ହବ କେହି ଜାଣନ୍ତି ନାହିଁ ସାର୍ ! ଆଶ୍ଚର୍ଯ୍ୟ ! କିଏ ଇଅରପିସ୍‌କୁ ମୁହଁ ପାଖରେ ତ କିଏ ମାଉଥ୍‌ଅର୍ଗାନ ବଜାଇଲା ଭଳି ହାଣ୍ଡଲ୍ ପାଖକୁ ମୁହଁରେ ଦେଇ···ହାଃ ହାଃ ହାଃ···ହୋଃ ହୋଃ ହୋଃ···କି ଫୁଏଲ୍ !"

'ଫୁଏଲ୍ ନୁହଁ ନରେନ୍···", ବର୍ଷିଆନ୍ ବୋର୍ଡ଼ ଡାଇରେକ୍ଟର ନିଜର ବ୍ରିଫ୍‌କେସ୍‌ରେ କାଗଜପତ୍ର ଭର୍ତ୍ତି କରି ସଜାଡ଼ୁ ସଜାଡ଼ୁ ନରେନ୍‌ର ପିଲାକିଆ ମୁହଁ ପ୍ରତି ସସ୍ନେହ ଦୃଷ୍ଟି ଥରଟିଏ ନିକ୍ଷେପ କରି କହିଲେ—

"ରିଏଲିଟି ଏହାକୁ ହିଁ କୁହାଯାଏ । ଗଣତନ୍ତ୍ରରେ ତମେ ନିଷ୍ଠୁର ହୋଇପାରିବ ନାହିଁ ନରେନ୍ । ସେ କାଳିଆ ବସନ୍ତମୁହାଁ ଧେଡ଼େର୍ ହରିଜନ ଲୋକଟାକୁ ତମେ କଦାପି ସତ୍ୟକଥା କହି ପାରିବ ନାହିଁ । କହି ପାରିବ ନାହିଁ ଯେ—'ଅବେ ହେ କାଳିଆ···ଯା ପଳା ଏଠୁ, ପଳାରେ ଶଳା । ଏଠି ମାତ୍ର ଗୋଟାଏ ପୋଷ୍ଟ୍ । ସେ ପୁଣି ପିଅନ୍ ପୋଷ୍ଟ୍ ! ଅଧିକନ୍ତୁ ପୁଣି ସେ ପୋଷ୍ଟରେ ମନ୍ତ୍ରୀଙ୍କ ନିଜ ଭଣଜା ରହିଲାଣି ଛଅମାସ । ଆମେ ସେଇ ଲୋକର ଗୃକିରିକୁ କେମିତି ସ୍ଥାୟୀ କରିବୁ ସେଥିପାଇଁ ମଗେଇଥିଲୁ ନାଁ ତାଲିକା ଏକ୍‌ସଚେଞ୍ଜରୁ । କିନ୍ତୁ ଦେଖ ମଜା ! ଏମ୍ପ୍ଲୟମେଣ୍ଟ ଏକ୍‌ସଚେଞ୍ଜ ମନ୍ତ୍ରୀଙ୍କ ଭଣଜା ନାଁ ନ ପଠେଇ ପଠୋଉଛି ତୋ ନାଁ—ମାନେ ଯେ ଚଉଦଥର ଫେଲ୍ ମାରିଲାଣି ତାରି ନାଁ ! ଆରେ ହେ କାଳିଆ, ବସନ୍ତମୁହାଁ ହରିଜନ ଟୋକା, ଯା ଯାଃ । ନାହିଁ ଯଦି ନଯିବ, ତେବେ ଉତ୍ତର ଦେ ଆମର ବ୍ରହ୍ମାସ୍ତ୍ର ପ୍ରଶ୍ନର । ପ୍ରଶ୍ନଟା ହେଲା— ମନେକର ତୁ ଏ ଅଫିସ୍‌ର ଦରଓ୍ୱାନ୍ ପୋଷ୍ଟରେ ନିଯୁକ୍ତ ହୋଇଥିବା ପିଅନ । ମନେକର ଆଜି ରାତିରେ ଏ ଅଫିସ୍‌ରେ ଗ୍ରେଭ ପଶିଲା—ତୁ କଅଣ କରିବୁ ? ଫୋନ୍ କରିବୁ ତ ମୋ ପାଖକୁ କି ପୁଲିସ୍‌କୁ—ନା କ'ଣ ? ଆଚ୍ଛା, କଲୁ କଲୁ ରିଂ କଲୁ ପୁଲିସ୍ ଷ୍ଟେସନକୁ ! କର ଦେଖିବା, ତତେ ଫୋନ୍ ଆଉ ଆସେ କି ନାହିଁ—ଦେଖିବା ତୋ ବିଦ୍ୟାବୁଦ୍ଧି ! ଏମିତି ତ କହିପାରନ୍ତେ ନାହିଁ ଆମେ ତାକୁ, ଟାଲି ପଗ୍ଭରିଲେ—

ତମେ ଗାଁରେ ଥାଅ ? ଗାଁରେ ଫୋନ୍ ଅଛୁ ? ଗାଁରେ ଘରେ ଘେର ପଶିଲେ ତମେ ସିନା ପାଷ୍ଟିଗ୍ରଣ୍ଡ କର । ଏଠି କିନ୍ତୁ ଫୋନ୍ କରି ପୁଲିସକୁ ଡାକିବାକୁ ହବ । କଲ୍ ଗୋଟାଏ କଲ୍ ପୋଲିସଷ୍ଟେସନ୍‌କୁ । ଏଥିରେ କୁହ, କି ଝୁଲୁଛି କଲ୍ ଅମେ ? ଯଦି ସେ ଲୋକ ଫୋନ୍‌କୁ ମାଉଥ୍ ଅର୍ଗାନ ଭଳି ମୁହଁରେ ଦେଇ ହାଲେ ହାଲେ ବୋବେଇଲା ସେ ଫେଲ୍ ହବ ନାହିଁ ତ ଆଉ ହଅନ୍ତା କଣ ? ଏଇ ହେଲା ଇଏଲଟି, ନରେନ୍ ! ଗୁଡ୍, ଭୁଲିଯାଅ ସେସବୁ କଥା ! କପ୍ ଅଲ୍ ଦସ୍ ସିନେଟ…”

ନରେନ୍ ଘୂଞ୍ଚିଲେ । ନିଜର ବ୍ରିଫିକେସ୍‌ଟି ଧରି ଡାଇରେକ୍ଟର ପରଦା ଆଡ଼େଇ ବାହାରିଗଲେ ପୋର୍ଟିକୋରେ ରହିଥିବା ଗାଡ଼ି ପାଖକୁ ।

ନିଜର କାଗଜପତ୍ର ସଜାଡ଼ି ଧରି ନରେନ୍ ମଧ୍ୟ ବାହାରି ଆସିଲା । ହଠାତ୍ ପରଦା ସେପଟେ ଠିଆହୋଇଥିବା କୌଣସି ଜଣେ ଲୋକ ସହିତ ଧକ୍କା ଖାଉ ଖାଉ ନିଜକୁ ସମ୍ଭାଳିନେଲା ସେ । ଲୋକଟା ପଚାରିଲା—“ବାବୁ, ମୋର କ’ଣ ହେଲା ଆଜ୍ଞା !”

ଚମକି ପଡ଼ିଲା ନରେନ୍ । ଗୋଟାଏ ଭୂତ ପରି ସେଇ କଳା ବସନ୍ତମୁହାଁ ଧେଡ଼େରା ଲୋକଟାକୁ ଏଭଳି ମୁହାଁମୁହିଁ ପୃଥିବୀରେ ଭେଟିବ ବୋଲି ଆଦୌ ଭାବି ନଥିଲା ସେ ।

ନିଜକୁ ଯଥାସମ୍ଭବ ସଂଯତ କରି ନରେନ୍ ଲୋକଟାକୁ ଭୁଲେଇ ଦେଲା ଭଳି କହିବାକୁ ଚେଷ୍ଟା କରୁଥିଲା—“ତମେ କାଲି ଆସ । ମୋ ଷ୍ଟେନୋ ତମକୁ ଶିଖେଇଦେବ କେମିତି ଟେଲିଫୋନ୍ କରିବାକୁ ହୁଏ ଏଠି, ଏସବୁ ଅଫିସଗୁଡ଼ାକରେ ବୁଝିଲ ତ ?”

ଲୋକଟି କାନ୍ଦୁଥାଏ କି କଅଣ । ଗୋଟାଏ ଅଦ୍ଭୁତ ପ୍ରକାରର ନିଃଶ୍ୱାସ ବାହାରି ଆସୁଥାଏ ତା ଶୁଖି ଥରେଇ ପଞ୍ଜରା ଭିତରୁ । କିନ୍ତୁ…ସେ ନିଃଶ୍ୱାସ କାନ୍ଦର ନୁହେଁ—କ୍ରୋଧର ବି ନୁହେଁ ।

ଗୋଟାଏ ଗଣତନ୍ତ୍ରରେ ପ୍ରତିଦିନ ଇଣ୍ଟରଭ୍ୟୁ ନାମକ ହାଣକୁରାଢ଼ୀ ତଳେ ବଳିପଡ଼େ ଯାଉଥିବା ଲକ୍ଷ ଲକ୍ଷ ନାଗରିକ ସହରର ପାନ ବିଡ଼ି ଗୁ’ଦୋକାନ ବା ସିନେମା ଘର ସାମନାରେ ଯେଉଁଭଳି ସରଳ ଅମାୟିକ ହସରେ ଦୁନିଆର ଜାଲିଆତିକୁ ଈର୍ଷାଶୂନ୍ୟ ଭାବେ ପ୍ରତିଫଳିତ କରୁଥାନ୍ତି, ସେହିପରି ଏକ ବିଜ୍ଞ ହସ ସେ । ସେଇ ହସରେ ହସରେ କହିଗଲା ସେ—

“ମୁଁ ଜାଣିଚି ଆଜ୍ଞା ! ଯାହା ଗୁଲିଚି ଏଠି ସବୁ ଜଣା ଆମକୁ । କିଛି ଗୋପନୀୟ ନାହିଁ । ଗୁପ୍ତ ନାହିଁ, ଆଜ୍ଞା ! ଏଥର କି ଟେଲିଫୋନ୍ ପ୍ରଶ୍ନ ପଡ଼ିଗଲା, ସାର୍ । ଆର ଥରକୁ ଆହୁରି କ’ଣ ପଡ଼ିବ କିଏ ଜାଣେ ? ତେବେ ମତେ ଆଉ ଦେଖିବେ ନାହିଁ ଆଜ୍ଞା, ଆରଥର । ଏକେଷ୍ଟେଞ୍ଜ କହିଦେଇଚି—ଅଉ ନାହିଁ, ଅଉ ପଠେଇବ ନାହିଁ ମୋ ନାଁ…ଏଥର କି ବହୁ କଷ୍ଟରେ ଟଙ୍କା ପଚିଶଟା ଯୋଗାଡ଼ କରିଥିଲି…ଆଉ ପାରିବ ନାହିଁ, ପାରିବ ନାହିଁ ବାବୁ !”

---

# ଗାଈ ଖୋଜିବା ନା ବାଘ ଜଗିବା

ପୁରୀ ଜିଲ୍ଲାର ଗୋଟିଏ ଗାଁ । ଦୁଇ ଭାଇ ଥିଲେ—ଧବା ହୋତା, ସରବା ହୋତା । ତାଙ୍କ ବାପ ମା କୁଆଡ଼େ ପାଗଳ ଥିଲେ । ତେଣୁ ପୁଅ ଯେହେଁ ପାଗଳ ହେବେ, ଏ ତ ଓ୍ୱାଭାବିକ କଥା ।

ଗାଁବାଲାଏ ଭାଇ ଦୁହିଁଙ୍କୁ ଏକଘରକିଆ କରିଦେଲେ । ପିଲା ଯୋଡ଼ିକ କଅଣ କରନ୍ତେ ଆଉ ? ଘର ଭିତରେ ଥାଇ ଗାଁବାଲାଙ୍କୁ କବାଟ କଲି ଦେଲେ । ଧୀରେ ଧୀରେ ପିଲା ଯୋଡ଼ିକ ବଢ଼ିଲେ । ବଡ଼ ହେଲେ । କିନ୍ତୁ ଗାଁବାଲାଙ୍କ ଦୃଷ୍ଟିରେ ମଣିଷ ହେଲେ ନାଇଁ—ଅମଣିଷ ହୋଇ ରହିଗଲେ ।

ଧବା ସରବା ଦି'ଭାଇ ଭାରି ଯାଙ୍ଗ । ଯେହେଁ ଅଭିଆଡ଼ା । ତାଙ୍କୁ ତ ଗାଁବାଲା ଏକ ଘରକିଆ କରିଥାନ୍ତି—କନ୍ୟା ମିଳନ୍ତେ କୁଆଡ଼ୁ ! ତେଣୁ ଦି' ଭାଇ ଅଭିଆଡ଼ା ହୋଇ ରହିଗଲେ । ଯାଙ୍ଗ ହେଲେ । ପରସ୍ପରରେ ସ୍ନେହ ସୌହାର୍ଦ୍ଦ୍ୟ ରଖି ଚାଲି ଯାଉଥିଲେ । ଘର ଭିତରୁ ଦୁଇ ଭାଇଙ୍କର ହସଖୁସି ଗପସପ ବାହାରକୁ ଶୁଭେ । ·ଶୁଣନ୍ତି ଗାଁବାଲାଏ । ଆଶ୍ଚର୍ଯ୍ୟ ହୁଅନ୍ତି ଲୋକେ । ଯୋଡ଼ାଏ ବାୟା ଏକାଠି ରହୁଛନ୍ତି, ଏକା ଘରେ ! କଳି ନାଇଁ କି ଗୋଳ ନାଇଁ ! ବାବା ହ'ନ୍ତି ବୁଢ଼ାବୁଢ଼ୀମାନେ ।

ତେବେ ଯନେ ଯନେ ଧବା ସରବାଙ୍କ ଭିତରେ କଳି ବି ଲାଗେ । ଗାଁବାଲାଏ ଶୁଣନ୍ତି । କାନ ପାରି ଶୁଣନ୍ତି, କିନ୍ତୁ କେହି ଆସନ୍ତି ନାଇଁ ଭାଇ ଦୁହିଁଙ୍କ ଝଗଡ଼ା ଭାଙ୍ଗି ଦେବାକୁ, ମିଳାମିଶା କରାଇ ଦେବାକୁ । କିନ୍ତୁ ଗାଁବାଲାଏ ଭାଇଙ୍କ ଗଣ୍ଡଗୋଳରୁ ଯେତେ ସୁଖ ଉପୁଜିବ ବୋଲି ଆଶା କରୁଥାନ୍ତି, ସେତେ ସୁଖ ଉପୁଜେ ନାଇଁ । ବାୟା ଯୋଡ଼ାକ ପୁଣି ମିଳାମିଶିଯାନ୍ତି । ଝଗଡ଼ା ବନ୍ଦ ହେଲେ ହେଁ ହେଁ ଫେଁ ଫେଁ ଶବ୍ଦ ଶୁଣାଯାଏ ପୁଣିଥରେ ଧବା ହୋତା ସରବା ହୋତାଙ୍କ ଏକଘରକିଆ ଘରଟାର ବୁଜା କବାଟ ଝିଡ଼କି ସନ୍ଧିରୁ । ଗାଁବାଲାଏ ମନ ମାରିଦେଇ ପୁଣି ଅପେକ୍ଷାରେ ରହନ୍ତି ଭବିଷ୍ୟତକୁ । ବାୟା ପାଗଳା ଟୋକା ଯୋଡ଼ାକ କେତେ ଦିନ ଭାଇପଣିଆ କରି ଏକା ଏକା ରହି ଚାଲିବେ ଏ ଭବ ସଂସାରରେ ଦେଖିବାକୁ ହାଇଁପାଇଁ ହଉଥାଏ ସବୁରି ମନ ଗାଁ ଭିତରେ ।

ବାହାର ଦୁନିଆର ଏଇ ଅପେକ୍ଷାମାଣତା ଅନ୍ତରାଳରେ ଢବା-ସରବାଙ୍କ ଭ୍ରାତୃଲୀଳା ଦୃଶ୍ୟମାନ ହୁଏ ପ୍ରାୟ ଏକ ନିର୍ଦ୍ଦିଷ୍ଟ ସମୟରେ । ସଞ୍ଜ ଦିହେଁ ଗାଁ ଗୋହିରି ଦେଇ ଲୋକଲୋଚନ ଅନ୍ତରାଳରେ ଗତି କଲାପରି ଲୁଚଛପି ଯା'ଆସ କରିବାର ଦେଖାଯାଏ ଥରେ ଥରେ । ତେବେ, ଗାଁ ମଝିଦାଣ୍ଡରେ ଢବା-ସରବାଙ୍କ ପାଇଁ ରାସ୍ତା ତ ବନ୍ଦ କରି ଦିଆଯାଇଥାଏ ସାମାଜିକ ବାସନ୍ଦ ପ୍ରକାରେ, ତେଣୁ ସେ ଦୁହେଁ ଗାଁ ଦାଣ୍ଡବାଟେ ଯାଆ-ନକରି ବାଡ଼ପଟେ ବାଟ ଟିଏ ଫିଟେଇଥାନ୍ତି ବାହାର ଦୁନିଆକୁ କୋଉ ଖଣ୍ଡରେ । ବାଡ଼ପଟ ଗୋହିରିଏ ଗୋହିରିଏ ରଙ୍କାପଙ୍ଗି କୁଆଡ଼େ ବାହାରିଯାନ୍ତି ଟୋକା ଯୋଡ଼ାକ । ପୁଣି ସେହିଭଳି ଫେରି ଆସନ୍ତି ବି ଘରକୁ ବାଡ଼ପଟେ । ସେମାନଙ୍କର ଏ ରଙ୍କାପଣ ଚଳପ୍ରଚଳ ଲୋକଙ୍କୁ କୌତୁକ ପ୍ରାୟ ଲାଗେ । "ବୋପା ମା'ଙ୍କ ଛୁଆ ତ !" ମୁରବି ସ୍ଥାନୀୟ କେତେଇ କି ବଡ଼ଦେଇମାନେ କହିବାର ଶୁଣାଯାଏ, "ବୋପା ତ ପାଗଳ ହୋଇ ମଲା; ମା' ତାଠୁ ବଳେ—ପୁଏ ଆଉ କ'ଣ ହ'ନ୍ତେ ? ସେଇ ବାୟା ସେଇ ପାଗଳା । ଦେଖିଲଣିନା ତାଙ୍କ ଚେହେରାମାନ ! ଯୋଡ଼ାଏ ଭୂତ ! ଭେଟଣା ହୋଇଯିବ ମଣିଷର ଦୃଷ୍ଟି ପଡ଼ିଗଲେ !"

ଢବା ସରବା ବାୟା ହେଲେ ବି ଅବଶ୍ୟ ଗାଁ ଲୋକଙ୍କୁ ଭେଟଣା କରିବାକୁ ଗାଁ ବାଡ଼ପଟ କିଆବଣ କି ଖିରକୋଳି ଭଳିଆ କୋଳି ବୁଦାରେ ଭିଡ଼ି ଲଟି ବା ବଣ ଆଡ଼େ ସେଭଳି ଲୁଚଛପି ଯା'ଆସ କରୁନଥାନ୍ତି । ସେମାନେ ଭୂତ ଭଳି ଦିଶନ୍ତି; ତେବେ ଭୌତିକ ଜଗତରେ ବାସ କରନ୍ତି ନାହିଁ । ଏହାର ପ୍ରମାଣ—ସେ ଦୁଇ ବାୟାଙ୍କ ମଝିରେ ଯୋଗ ସୂତ୍ର ସ୍ୱରୂପ ରହିଥାଏ ଏକ ପାର୍ଥିବ ପ୍ରାଣୀ—ଗୋଟିଏ ଗାଈ । ଢବା ସରବାଙ୍କ ସଂସାର ଏ ଗାଈଟିକୁ କେନ୍ଦ୍ର କରି । ଗାଈଠାରୁ ବାଛୁରି ପାଇବା କି କ୍ଷୀର ଦୁହିଁବା ତାଙ୍କ କଳ୍ପନାକୁ ଉଚ୍ଚାଟିତ କରିନାହିଁ କେବେ । କିନ୍ତୁ ଗାଈଟି ପ୍ରତି ଅତ୍ୟନ୍ତ ଅନୁରକ୍ତ ସେ ଦୁହେଁ । ଗାଈକୁ ଚରେଇବା, ବୁଲେଇବା, ହେପାଜତ କରିବାରେ ସକାଳ-ସନ୍ଧ୍ୟା କାଳ ବିତିଯାଏ ଭାଇଙ୍କର । ଗୁହାଳରେ ଗାଈ ବନ୍ଧା ହେଉଥିଲା ବେଳେ ଦୁଇଭାଇ ମଧ୍ୟ ଲାଗିଥାନ୍ତି ତା ସାଙ୍ଗରେ । କିଏ ଟିକିଏ ବାଛୁଥାଏ ତ କିଏ ତା ଗଳାର କମ୍ବଳକୁ ଆଉଁସି ଆଉଁସି ବାୟାଙ୍କ ଭଳି କେତେ କ'ଣ ଗପିଯାଉଥାଏ, ହସି ହସି ଗଡ଼ୁଥାଏ ତ କାନ୍ଦି କାନ୍ଦି ଲୁହ ସିଂହାଣି ହୋଇ ପଡ଼ୁଥାଏ । ଭାଇ ଦୁହିଁଙ୍କ ଏ ଅଦ୍ଭୁତ ଗୋ-ସେବାର ଦୃଶ୍ୟ ଜଳାକବାଟି ବାଟେ ଗାଁ ପିଲାଙ୍କୁ ଦିଶେ । ପିଲାମାନେ ବୁଝିପାରନ୍ତି ନାହିଁ କିଛି ସେ ଦୃଶ୍ୟରୁ । ଥଟ୍ଟା ନକଲ ଆରମ୍ଭ କରନ୍ତି, ନହେଲେ ପରମୁହୂର୍ତ୍ତରେ ଢବା-ସରବାଙ୍କୁ ସମ୍ବୋଧନ କରି କ'ଣ ନାହିଁ କ'ଣ କହୁ କହୁ ଅଯଥାରେ ଗୁଣ୍ଡାଏ ଢେଲା ବର୍ଷଣ କରି ଢବା-ସରବା ସମେତ ତାଙ୍କ ପ୍ରେମାସ୍ପଦ ଏକମାତ୍ର ଜୀବଟିକୁ ଫୁରୁକୁଟି ମାରି ତଡ଼ିଦେବା ଆଡ଼େ ଉଦ୍‌ଗ୍ରୀବ ଥାନ୍ତି ।

ଯେତେବେଳେ ଢବା ସରବା ବାସ୍ତବିକ ଉତ୍କ୍ଷିପ୍ତ ହୋଇଉଠନ୍ତି । ପିଲାଏ ତାଙ୍କ ଉପରେ ନଜର ରଖୁଛନ୍ତି ଜାଣିଲେ ଢବା-ସରବା ସତକୁସତ ବାୟା ହୋଇଯାନ୍ତି । ଢବା

ଦାଣ୍ଡ କବାଟ ଖୋଲିଦିଏ ସେତେବେଳେ । ତା ହାତରେ ମସ୍ତ ଏକ ଠେଙ୍ଗା । ପିଲଙ୍କ ଆଡ଼କୁ ମାଙ୍କଡ଼ ଖେଦିଲା ଭଳି ଖେଦି ଆସେ ହବା । ସରବା ଘର ଭିତରୁ କୁହାଟ ମାରେ—'ଧ—ଧ—ଧ—ଧ ।' ପିଲାଏ ଡରିଯାନ୍ତି । ପଳାନ୍ତି । ଭାଇ ଦୁହେଁ ତତ୍‌କ୍ଷଣାତ୍ ଦାଣ୍ଡ କବାଟ କିଳିଦେଇ ପଶିଯାନ୍ତି ନିଜ ଘର ଭିତରକୁ । ସେଇଠୁ ଦୁହେଁ ମିଶି ଗାଈକୁ ଆଉଁସାଆଉଁସି କରନ୍ତି । ତାକୁ ପ୍ରବୋଧ ବାକ୍ୟ ଶୁଣାନ୍ତି । ଧୈର୍ଯ୍ୟ ଧରିବାକୁ ଗୋ' ମାତାକୁ ଉପଦେଶ ଦେଉ ଦେଉ ଆଉ ବଡ଼ଭାଇର ହ ାର ବକର ବକର ରୋଗ ଆରମ୍ଭ ହୋଇଯାଏ । ହବାର ରୋଗ ହେଲା ଏଇ—ବକର ବକର ଭଟର ଭଟର । ତାକୁ ଅଟକେଇଦେଲେ ସେ ଯଦି ବକର ବକର ହବା ଆରମ୍ଭ କଲା ତ କାଠିକର ପାଠ ଚୁପ୍ ହବାକୁ । କିନ୍ତୁ ସାନଭାଇ ସରବାର ମୁଣ୍ଡ ଏତେ ଶୀଘ୍ର ବିଗିଡ଼ି ଯାଏନା । ବରଂ ବଡ଼ ଭାଇର ମଗଜ ଥଣ୍ଡା କରିବାକୁ ସେ ସବୁବେଳେ ତତ୍ପର । ଏଥିପାଇଁ ସରବାର ମାର୍ଗ ହେଲା ବଡ଼ ଭାଇ ହବା କାନରେ ଉପଦେଶାମୃତ ବୃଷ୍ଟି କରିବା । ହବା ସରବାର ଉପଦେଶ ଶୁଣେ । ଦୁହେଁ ଗାଈକୁ ଗୁହାଳରେ ଏକା ଛାଡ଼ିଦେଇ ଆସନ୍ତି ଭାଇ ଘର ଭିତର ଅଗଣାକୁ । ଅଗଣାରେ ପଡ଼ିଥାଏ ଖଣ୍ଡେ ବଡ଼ ପଥର । ଦୁ ଭାଇ ବସନ୍ତି ସେ ପଥର ଖଣ୍ଡକ ଉପରେ । ସରବା ଶାସ୍ତ୍ର ଆଲୋଚନା କଲା ଢଙ୍ଗରେ ଚକାଟିଏ ପକାଇ ସେଠାରେ ବସିପଡ଼େ । ସେଇଠୁ ଚାଲେ ଶାସ୍ତ୍ରଚର୍ଚ୍ଚା । କିନ୍ତୁ କି ଶାସ୍ତ୍ର ସେ ? କେଉଁଠୁ ଶ୍ଳୋକ ସେଗୁଡ଼ାକ ? ଗାଁଲୋକେ ସ୍ପଷ୍ଟ ଶୁଣିପାରୁଥାନ୍ତି ସରବାର ଉଚ୍ଚବାଚ । ବାହାରେ ପୁରୁଖା ପୁରୁଖା ବ୍ରାହ୍ମଣ ପଣ୍ଡିତଙ୍କ ଭିତରେ ସରବାର ଶାସ୍ତ୍ର ଓ ଶ୍ଳୋକାବୃତ୍ତି ଯୁଗପତ୍ କୌତୂହଳ ଓ ବିସ୍ମୟ ସୃଷ୍ଟି କରେ । ସେମାନେ କିଛୁ ଉତ୍ତର କରି-ପାରନ୍ତି ନାହିଁ ସେଥିରୁ । କିନ୍ତୁ ସରବା ଅନର୍ଗଳ ଉପଦେଶାମୃତ ବର୍ଷଣ କରିଗଲେ ବଡ଼ଭାଇ ହବାକରର କର୍ଣ୍ଣକୁହରରେ ହବାର ବକର ବକର ଭଟର ଭଟର କ୍ରମେ ଥମି ଆସେ । ସେ ସୁସ୍ଥ ହୋଇଉଠେ । କିନ୍ତୁ ସରବାର ଶାସ୍ତ୍ରଚର୍ଚ୍ଚା ଶେଷ ହୁଏ ନାହିଁ । ରାତି ଗଡ଼ିଯାଏ । ଖିଆପିଆ ଭୁଲି ଦୁଇଭାଇ ମାତିଥାନ୍ତି ଶାସ୍ତ୍ରଚର୍ଚ୍ଚାରେ । ଶେଷରେ ବଡ଼ଭାଇ ହବାର ସୁସ୍ଥ ମସ୍ତିଷ୍କରୁ ଶୁଭ ବୁଦ୍ଧି ଉଦୟ ହୁଏ । ସାନ ଟୋକା ସରବାର ପାଗଳାମି ଭଲ କରିବାକୁ ତତ୍ପର ହୋଇପଡ଼େ ସେ । କୌଣସି ପ୍ରକାରେ ସରବାର ଶାସ୍ତ୍ରଚର୍ଚ୍ଚା ସମାପ୍ତ ହେଲା ପରେ ଦୁଇ ଭାଇ ଉଠନ୍ତି ପଥର ଉପରୁ । ଚାଲନ୍ତି ହାଣ୍ଡିଶାଳ ଆଡ଼େ । ହାଣ୍ଡିରେ ପଖାଳ ଖଣ୍ଡିଏ ସଦାବେଳେ ମହଜୁଦ ରହିଥାଏ । ଦୁଇ ଭାଇ ଖାଇ ବସନ୍ତି । ଖାଉ ଖାଉ କଅଣ କଥା ପଡ଼େ କେଜାଣି—ଆରମ୍ଭ ହୁଏ ହସ—ନହେଲେ କାନ୍ଦ । ସାବାଡ଼ ହେଇ ହସ ନହେଲେ କାନ୍ଦର ସ୍ୱର ଅସ୍ଥିର କରିପକାଏ ବାହାର ଦୁନିଆକୁ । ଗାଁବାଲା କାନରେ ସୋଲବଣ୍ଡା ମାରିଦିଅନ୍ତି । ଚୁପ୍‌ଚାପ୍ ଶୋଇଯାନ୍ତି । ସକାଳକୁ ହବା ସରବାଙ୍କ ହସକାନ୍ଦ ଆଉ ନଥାଏ । ସେମାନେ ବାଡ଼ି ଗୋହିରି ବାଟେ ଗାଈଟିକୁ ଅଡ଼େଇ ଅଡ଼େଇ ପଲେଇ ଯାଇଥାନ୍ତି ଦୂର ଲଟି-ବଣ ଆଡ଼େ । ଗାଁରେ ଶାନ୍ତି ବିରାଜେ ।

ଏମିତି ଏମିତି ଦିନ କଟିଯାଉଥାଏ । ଦିନେ ଆସି ପହଞ୍ଚିଗଲା ବିଷମ ସମସ୍ୟା । ସେଦିନ ଗାଁ ପାଖ ଗୋଚର ପଡ଼ିଆରେ ଚରୁଥିବା ଗାଈଟା ହଠାତ୍ କେଉଁଆଡ଼େ ଗୁଲିଗଲା—ଆଉ ଫେରିଲା ନାହିଁ ଗୁହାଳକୁ । ଦିବା ସରବା ଘରେ ଥିଲେ । ଗାଈଟା ପଡ଼ିଆରେ ଚରୁଥିବା ଯୋଗୁ ତା ଆଡ଼କୁ ଅଖି ରଖିପାରି ନଥିଲେ । ସରବା କଅଣ ପାଇଁ ବାହାରକୁ ଆସିଥାଏ । ପଡ଼ିଆରେ ଗାଈକୁ ନଦେଖି ମୁଣ୍ଡ ବିଗିଡ଼ିଗଲା ତାର । ଘରକୁ ଦଉଡ଼ି ଆସି ଦିବାକୁ ଡାକ ପକେଇଲା, "ଭାଇନା···ଗାଈ ? ଗାଈ ଆସିଲାଣି କି ଗୁହାଳକୁ ?" ଦିବା ଗୁହାଳ ଅଣ୍ଡାଳି ପକେଇଲା । ଗୁହାଳରେ ଗାଈ ନାହିଁ ଦେଖି ମୁଣ୍ଡରେ ତାର ନାନା ଦୁର୍ଶ୍ଚିନ୍ତା ଖେଳିଗଲା ।

ପୁରୀ ଜିଲ୍ଲାର ଏଇ ଗାଁଟି ସମୁଦ୍ର କୂଳଠୁଁ ବେଶୀ ଦୂର ନୁହେଁ । ଗାଁ ପାଖକୁ ଲାଗି ଯୋଉ ଲଟିବଣଟି ବୁଦୁବୁଦିକିଆ ହୋଇ ଉଠେ, ଧୀରେ ଧୀରେ ସେ ବଣ ଗହନରୁ ଗହନତର ହୋଇ ବ୍ୟାପିଯାଇଚି ସମୁଦ୍ର ତୀର ଯାକେ । ସେ ବଣରେ ବାଘ ଥାନ୍ତି । ବଡ଼ ନୁହେଁ—ଗ୍ରେଞ୍ଜ ବାଘ । ବାଲି ହରିଣ ବି ପ୍ରଚୁର । ବାଘମାନେ ଏଇ ବାଲିହରିଣ ଆହାର କରି ବଣରେ ବଞ୍ଚିବା କଥା । କିନ୍ତୁ ଥରେ ଥରେ ଗୋଟାଏ ଗୋଟାଏ ଦୁର୍ଦ୍ଦାନ୍ତ ବାଘ ବାହାରି ଆସନ୍ତି ଲଟିରୁ । ଗୋରୁଗାଈ, ମେଣ୍ଢା, ଛେଳି ମାରନ୍ତି ଏଇମାନେ । ଗଲା କେତେଦିନ ହେଲା ଏମିତି ଗୋଟାଏ ବାଘର ଆବିର୍ଭାବ ବିଷୟରେ ଦିବା ସରବା ଭାଇ ଦୁହେଁ ଆଶଙ୍କା କରୁଥିଲେ କେତେକ କାରଣରୁ । ବର୍ତ୍ତମାନ ଖୋଲା ପଡ଼ିଆରେ ଚରୁଥିବା ଗାଈଟା ଅନ୍ତର୍ଦ୍ଧାନ ହୋଇଯିବା ଦେଖି ଭାଇ ଦୁହିଁଙ୍କର ସନ୍ଦେହ ନିର୍ଦ୍ଦିଷ୍ଟ ରୂପନେଇ ଠିଆ ହୋଇ ପଡ଼ିଲା ସେମାନଙ୍କ ସାମ୍ନାରେ ।

ଦିବା ସରବାଙ୍କ ଗୋ-ଏଷଣା ଅବଶେଷରେ ଏକ ପ୍ରଗାଢ଼ ଗବେଷଣାର ସାମଗ୍ରୀ ହୋଇ ମୁଣ୍ଡ ଟେକିଲା ଭାଇ ଦୁଇଙ୍କ ଆଖିରେ । ସେମାନେ ଚତୁର୍ଦ୍ଦିଗ ଗାଈକୁ ଖୋଜି ଖୋଜି ଶେଷରେ ହାଲିଆ ହୋଇଗଲେ । ବସିପଡ଼ିଲେ ଠାଏ । ସେତେବେଳକୁ ଦିନ ରତରତ । ଗୁହୁଁ ଗୁହୁଁ ମାଡ଼ିଆସୁଚି ଅନ୍ଧାର । ଦିବା ସରବାଙ୍କ ଅଛୁଣ୍ଡା ବିଗ୍ରହ ସେଇ ଅନ୍ଧାର ସମ୍ମୁଖରେ କିଭଳି ଛୁଣ୍ଡି ହୋଇ ମୁହୂର୍ତ୍ତିକୁ ଅପେକ୍ଷା କରୁଥାନ୍ତି ଭାଇ ଦୁହେଁ । ହଠାତ୍ ତର୍କବିଦ୍ୟାରେ ସଙ୍ଗେ ସଙ୍ଗେ ସିଦ୍ଧାନ୍ତରେ ଉପନୀତ ହେବାର ଦକ୍ଷତା ପ୍ରଦର୍ଶନ କରିପାରୁଥିବା ସାନ ଭାଇଟିର ତୁଣ୍ଡରୁ ବାହାରି ପଡ଼ିଲା, "ଦେଖ ଭାଇନା, ଆଗରେ ଯୋଡ଼ାଏ ରାସ୍ତା । ମୋଟେ ଯୋଡ଼ାଏ ବାଟ ଏ ଗବେଷଣାରେ । ଗୋଟିଏ ହେଲା ଗାଈ ଖୋଜିବା, ଅନ୍ୟଟି ବାଘ ଜଗିବା ।"

ସାନ ସରବାର ଏ ଦାର୍ଶନିକ ଦ୍ୱିଧା ବଡ଼ ଦିବାକରକୁ ବେଳେବେଳେ ଭ୍ରମରେ ପକାଏ । ଦିବା ସରବା ମୁହଁକୁ କାବା ହୋଇ ଅନେଇ ପଚାରିଲେ, "କଅଣ କହିଲୁ ?"

ସରବା ବ୍ୟାଖ୍ୟା ଆରମ୍ଭ କରିଦେଲା । କହିଲା, "ଜଗତରେ ଯାବତ୍ ବ୍ୟାପାରର ମାର୍ଗ ଦୁଇ ପ୍ରକାର, ଭାଇନା । ଗୋଟିଏ ମାର୍ଗ ପିଣ୍ଡ ଆଡ଼କୁ, ଅନ୍ୟଟି ବ୍ରହ୍ମାଣ୍ଡ ଆଡ଼କୁ ।

ଆମ ଆଗରେ ପିଣ୍ଡ ମାର୍ଗ ଛଡ଼ା ଆଉ ତ କିଛି ମାର୍ଗ ଏଠାରେ ନାହିଁ, ଭାଇନା । ରାତି ଆସିଗଲା । କୃଷ୍ଣପକ୍ଷ । କିଟିକିଟି ଅନ୍ଧାର କେମିତି ମାଡ଼ିଆସୁଛି ଦେଖୁଛ ? ଶୀଘ୍ର ବିଚାର କର—କେଉଁ ମାର୍ଗ ଧରିବା । ରାତିସାକ ବଣରେ ବୁଲିବୁଲିକା ଗାଈ ଖୋଜିବା ନା ବାଘ ଜଗିବା ? କେଉଁ ମାର୍ଗ ଧରିବା ?"

ଦିବା ପଡ଼ିଗଲେ ମହା ଦ୍ୱନ୍ଦ୍ୱରେ । ସାନଭାଇ ସରବାର ପ୍ରଶ୍ନ ଏତେବେଳେକେ ଭେଦିଲା ଯାଇ ମର୍ମରେ । ସମସ୍ୟାଟା ପ୍ରାଞ୍ଜଳ ହୋଇ ଦିଶିଲା । ଗୋଟାଏ ଅଜଣା ଜଗତକୁ ଅଣ୍ଡାଳି ଅଣ୍ଡାଳି ସେମାନେ ଗାଈଟିକୁ ଠାବ କରିବେ ନା ସେଇ ଅଜଣା ଜଗତର ଯେଉଁ ମାର୍ଗ ଦେଇ ତାଙ୍କ ପ୍ରିୟ ଗାଈଟିର ନିଶ୍ଚିତ ଶତ୍ରୁ ବାଘ ପ୍ରବେଶ କରିବ ଆଜି ରାତିରେ ତାଙ୍କ ଜ୍ଞାତ ଜଗତକୁ, ସେ ମାର୍ଗଟିକୁ ଠାବକରି ବାଘର ଗତିପଥ ରୋଧ କରିବେ—ସମସ୍ୟାଟି ଏଇଭଳି ପ୍ରତିଭାତ ହେଲା ବଡ଼ଭାଇ ଦିବାକରର ଦୃଷ୍ଟିରେ ।

ଅନ୍ଧାର ଘନରୁ ଘନତର ହେବାକୁ ଲାଗିଥାଏ । ଅଦୂରରୁ ଗାଁର ଆଲୁଅ ମିଟିମିଟି ଆଖିରେ ଅନାଉଥାଏ ଭାଇଦୁହିଁଙ୍କ ଆଡ଼କୁ । ଅଳ୍ପ ସମୟ ପରେ ସେ ଆଲୁଅଟି ମଧ୍ୟ ଲିଭିଗଲା ପରି ଦିଶିଲା ।

ବଡ଼ଭାଇ ଦିବାକରର ଚକ୍ଷୁରେ ଏକ ଝଲକ ପଡ଼ିଗଲା ପରି ବିଚାରଟିଏ ଉଦୟ ହୋଇଉଠିଲା । 'ବୁଝିଲୁ ସରବା"—ଦିବାକର ସାନଭାଇ କାନ୍ଧରେ ହାତଟିଏ ରଖିରଖି ନିଜର ସିଦ୍ଧାନ୍ତ ଜ୍ଞାପନ କଲା, "ବାଘକୁ ଜଗିବା ।"

ସରବା ଚମକିପଡ଼ିଲା । ପଚାରିଲା—"କିଅଣ କହୁଛ ?"

ଦିବାକର ବାଖ୍ୟାନ କଲା—"ଶୁଣ, ଗାଈକୁ ଖୋଜିବା ବୃଥା । ଏ ଅନ୍ଧାରକୁ ଚାହିଁ । ଏହା ଭିତରେ ଗାଈ କାହିଁ, କୋଉଠି, କିଏ କହିପାରିବରେ ବାବୁ ! କିନ୍ତୁ ଏଇ ଅନ୍ଧାରରେ ଲଟି ଆଡ଼କୁ ଅନା । ଲଟିରୁ ବାଘ ବାହାରିବ ନିଶ୍ଚେ । ବାଘ ତ ଚାରିପଟ ଅନ୍ଧାରରୁ ବାହାରିବ ନାହିଁ—ବାହାରିବ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରୁ । ସେଇଟା ହେଲା ଲଟି । ବର୍ତ୍ତମାନ ଆମେ ପ୍ରାୟ ଲଟିର ସେଇ ଅଞ୍ଚଳରେ ବସିଚେ ଯୋଉଠି ପ୍ରବେଶ ପଥ ଲଟି ଭିତରକୁ—ଅର୍ଥାତ୍ ବାଘର ଆବିର୍ଭାବର ପଥ ଉପରେ ହିଁ ଆମେ ପ୍ରାୟ ପହଞ୍ଚି ସାରିଛେ । ବର୍ତ୍ତମାନ ଆମର ଦୃଷ୍ଟି ନିବଦ୍ଧ ହେବା ଆବଶ୍ୟକ ସେଇ ମାର୍ଗ ଉପରେ ଯେଉଁ ବାଟେ ବାଘ ବାହାରିବ ବଣରୁ । ଏହା ତ ନିର୍ଦ୍ଦିଷ୍ଟ—ନା କିଛି ସନ୍ଦେହ ଅଛି ଏଥିରେ ? କିନ୍ତୁ ଗାଈ ଅନିର୍ଦ୍ଦିଷ୍ଟ । ତାର ସ୍ଥିତି ବିଷୟରେ ଆମେ କିଛି ଜାଣୁନା । ତେଣୁ ବାଘକୁ ନ ଜଗି ଗାଈ ଖୋଜିବା ଆମ ପକ୍ଷରେ ମୂର୍ଖତା ହେବରେ ସରବା !"

ସାନ ଭାଇ ସରବା ଶାସ୍ତ୍ରଜ୍ଞ । ବିପଦ ବେଳେ, ବଡ଼ଭାଇର ମୁଣ୍ଡ ବିଗିଡ଼ ଗଲାବେଳେ, ବରାବର ଏଇ ଶାସ୍ତ୍ରଜ୍ଞ ସରବା ଦିବାକରର ମସ୍ତିଷ୍କକୁ ସୁସ୍ଥ ଅବସ୍ଥାକୁ ଆଣି ପାରେ ଅତି ସହଜରେ, ଶାସ୍ତ୍ର ବଳରେ । କିନ୍ତୁ ଆଜି ସରବାର ଦ୍ୱିଧାଗ୍ରସ୍ତ ମସ୍ତିଷ୍କକୁ ସାନ୍ତ୍ୱନା ଦେବାର ଦାୟିତ୍ୱ ପଡ଼ିଯାଇଥିଲା ବଡ଼ଭାଇ ଦିବାକର ହାତରେ । ସରବା ଉଠି ଠିଆ

ହୋଇ ପଡ଼ିଲା । ଦବା ତ ଉଠିବ ଉଠିବ ହେଉଥିଲା । ଦୁଇ ଭାଇ ଯୋଡ଼ିଏ ମୂଳ ବାଉଁଶର ଡଙ୍ଗା ଧରିଥିଲେ ନିଜ ନିଜ ହାତରେ । ସେଇ ଡଙ୍ଗା ଦୁଇଟିକୁ ଆଶ୍ରୟ କରି ଘୁଞ୍ଚିଲେ ଦୁଇ ଭାଇ ବଣ ଆଡ଼କୁ । ଅନ୍ଧାର ଘନରୁ ଘନତର ହୋଇ ଆସିଲା । ତଥାପି ଦବା ସରବାଙ୍କ ଦୃଷ୍ଟି ଓ ଦର୍ଶନର ପରିଚ୍ଛନ୍ନତା ସ୍ୱଚ୍ଛରୁ ସ୍ୱଚ୍ଛତର ହୋଇ ଏକ ସ୍ଥିର ନିଶ୍ଚଳ ମାନସିକ ସଙ୍କଳ୍ପରେ ପରିଣତ ହୋଇଯାଉଥିଲା ।

ସେମାନେ ବଣରୁ ବାଘ ବାହାରିବାର ଏକ ନିର୍ଦ୍ଦିଷ୍ଟ ନିର୍ଗତ ପଥର ପାଖାପାଖି ହୋଇ ଆସୁଥିଲେ । ଏହି ସମୟରେ ସେମାନେ ଲକ୍ଷ୍ୟ କଲେ ବଣରୁ ବାହାରିବା ରାସ୍ତାଟି ପ୍ରକୃତରେ ଏକ ନୁହେଁ ଦୁଇ । ଗୋଟିଏ ରାସ୍ତା ଯାଇଚି ସିଧା ଗାଁକୁ । ଅନ୍ୟଟି ବିଲ ଆଡ଼କୁ । ଦବା ସରବା ପଡ଼ିଗଲେ ବିଭ୍ରମରେ । ସରବା କହିଲା, "ଭାଇନା ! ଦେଖୁଚୁ ! ପୁନଶ୍ଚ ଦ୍ୱିଧା !" ଦବା କହିଲା, "ଚିନ୍ତା କରନା । ସବୁ ଦ୍ୱିଧାର ସମାଧାନ ଦୁଇ ନୁହେଁ ଏକ ।"

ସରବା ଦୁଃଖିତ ହୋଇପଡ଼ିଲା । "ନା, ଭାଇନା ! ଏ କ୍ଷେତ୍ରରେ ସମାଧାନ ଏକ ନୁହେଁ—ଦୁଇ ।"

"ମାନେ ?" ଦବା ଅନ୍ଧାରରେ ସରବାର ମୁହଁ ନ ଦେଖି ପାରି ଘୁଞ୍ଚି ଆସିଲା ସାନଭାଇ ପାଖକୁ ।

ସରବା ଦବାର ଆଖି ଯୋଡ଼ିକର ଧଳା ଅଂଶକୁ ଦେଖୁଥାଏ କେବଳ । ଅଥଚ ଦୁଃଖରେ ଗ୍ରୁତ ତାର ଫାଟିଗଲା ଭଳି ସ୍ୱରଟିଏ ଶୁଣାଗଲା, "ଭାଇନା, ଆମେ ଭାବିଥିଲେ ଏ ରାତିରେ ଆମେ ଦୁହେଁ ଏକାଠି ବସି ବାଘର ବାଟ ଓଗାଳିବା । କିନ୍ତୁ ସେ ଆଶା ମଧ୍ୟ ମଉଳେଇ ଦେଲା ଏ ଦ୍ୱିଧା । ବର୍ତ୍ତମାନ ସମାଧାନ ହେଲା—ବିଭକ୍ତ ହେବା । ଆମେ ଦୁହେଁ ବିଚ୍ଛିନ୍ନ ହେବା । ତମେ ବସ ଏଇଠି—ଯୋଉ ବାଟଟା ଯାଇଛି ଗାଁ ଆଡ଼େ । ମୁଁ ଯାଉଚି ଆର ରାସ୍ତା ଜଗିବି—ବିଲ ଆଡ଼କୁ ଯାଇଚି ଯେଉଁଟା । ରାତି ସାରା ଆମେ ଏକା ଏକା ଜଗି ବସିବା ଏ ଦୁଇ ରାସ୍ତାକୁ । ତମେ ତମ ରାସ୍ତା ଜଗ—ମୁଁ ଜଗୁଚି ମୋ ରାସ୍ତା । ବାଘକୁ କଦାପି ଗାଁ ବାଟରେ ଗ୍ରୁଡ଼ିବ ନାହିଁ, ଭାଇନା । ମୁଁ ଜଗୁଛି ବିଲ ପଟ । ଗାଈ ନିଶ୍ଚେ ବନ୍ଧିବ ଯଦି ସେ ଲଟି ବାହାରେ ଥିବ—ହୁଏତ ବିଲରେ ନ ହେଲେ ଗାଁ ଆଡ଼େ । ହଉ—ବିଦାୟ, ଭାଇନା ! ଜଗିଥିବ । ଶୋଇବ ନାହିଁ ଜମାରୁ ।"

ଦବାଠାରୁ ବିଦାୟ ନେଇ ସରବା ଦୂରକୁ ଗ୍ରୁଲିଗଲା । ଦବା ବାଉଁଶ ମୂଳ ଠେଙ୍ଗାଟାକୁ କାନ୍ଧରେ ପକାଇ ପହରା ଦେବା ଆରମ୍ଭ କରିଦେଲା । ଦୂରରୁ ସରବା ରାତି ପାହାନ୍ତା ପହରକୁ ଥରେ ଗୋଟାଏ ବଡ଼ ପାଟି କରି ଦବାକୁ ସତର୍କ କରି ଦେଇ ପଗ୍ରୁରିଥିଲା, "ବାଘ ତମ ପଟେ ବାହାରିଲା କିଓ ?"

ଦବା ବଡ଼ ହାଇଟାଏ ମାରି ସରବାକୁ ସାନ୍ତ୍ୱନା ଦେବାକୁ କହିଲା, "ପୂର୍ବ ପଟକୁ ଅନା । ସିନ୍ଦୂରା ଫାଟୁଚି କେମିତି ଦେଖୁଚୁଟି ! ଆହା, କି ସୁନ୍ଦର ଦିଶୁଚିରେ ଏ ଗଗନ ମଣ୍ଡଳ ସରବା !"

ସକାଳ ହେଇଗଲା । ସରବା କାନ୍ଧରେ ବାଡ଼ି ପକେଇ ଆସି ପହଞ୍ଚିଗଲା ଧବା ପାଖରେ । ପଚାରିଲା, "ବାହାରିଥିଲ ?"

ଧବା ଭଡ଼ଭୋଡ଼ ହୋଇ ବସିବା ପାଟରୁ ଉଠିପଡ଼ିଲା । କହିଲା—"ବାହାରିଥିଲେ ତ ଭଲହେଇଥାନ୍ତା ।"

ଧବା ସରବା ସେ ପର୍ଯ୍ୟନ୍ତ ନିଶ୍ଚିନ୍ତ ହୋଇ ରହିଥିଲେ ଯେ ଗତ ରାତରେ ବଣରୁ ବାଘ ଆଦୌ ବାହାରି ପାରିନାହିଁ—ନା ଗାଁ ରାସ୍ତାରେ, ନା ବିଲ ରାସ୍ତାରେ । ତ ଖୁସି ଖୁସି ହୋଇ ଲଣ୍ଠା ଆଉ ବାହାନପଡ଼ିଲେ ହାତ ଧରାଧରି ହେଇ । କିନ୍ତୁ ଗାଁ ମୁଣ୍ଡରେ ପହଞ୍ଚିବା ପୂର୍ବରୁ ଏକ ବିକଟାଳ କରୁଣ ଭୟାବହ ଦୃଶ୍ୟ ସେମାନଙ୍କୁ ସ୍ତବ୍ଧ କରିଦେଲା । ସେଇ ସ୍ତବ୍ଧତା ଭିତରେ ସେମାନେ ପାଇଲେ ତାଙ୍କର ପ୍ରିୟତମ ଗାଈଟିର ଶେଷ ଦୃଶ୍ୟ । ଗାଈଟା ଗୁରିକାତ ଲମ୍ବେଇ ପଡ଼ି ଯାଇଥାଏ ମାଟି ଉପରେ । ତା ତୋଟି କଣା ହେଇଯାଇଥାଏ । ଆଉ ଦେହଟା କ୍ଷତ ବିକ୍ଷତ । ବିଶେଷତଃ ଗାଈଟାର ପଛ ପଟଟାକୁ ବିଦାରି ଯାଇଥାଏ ଯେଉଁ ଢଙ୍ଗରେ ସେଥିରୁ ଯେ କାଣ୍ଡଟା କାହାର ବୁଝିବାକୁ ବେଶି ଅକଲ ଦରକାର ନଥାଏ ଧବା ସରବାଙ୍କର ।

ହଠାତ୍ ମୁଣ୍ଡରେ ହାତ ଦେଇ ବଡ଼ ଭାଇ ଦିବାକର ବସିପଡ଼ିଲା । ବାହୁନି ଉଠିଲା, "ଆରେ ! କୋଉବାଟେ ବାହାରିଲା ? ଆମେ ତ ବାଟ ଜଗି ବସିଚେ ରାତି ସାରା ! କଳାଁଣୀ କେନ୍ଦୁଆ ବାହାରିଲା କୋଉ ବାଟରେ ରେ ସରବା ?"

ଦିବାର ପ୍ରଶ୍ନ ସରବାର ମସ୍ତିଷ୍କକୁ ଉତ୍ତେଜିତ କରିଦେଲା । ଠେଙ୍ଗାଟାକୁ ମାଟିରେ ଛିଅ ମାରିଲା ଭଳି ଉତ୍ତେଜନା ପ୍ରକାଶ କରି ସେ ଚିତ୍କାର କରିଉଠିଲା, "ତମ ବୁଦ୍ଧିରେ ପଡ଼ି ସର୍ବନାଶ ହୋଇଗଲା ! ମୁଁ ସ୍ଥିର କରିସାରିଥିଲି ଏ ପରିସ୍ଥିତିରେ ବାଘକୁ ନଜଗି ଗାଈ ଖୋଜିବା ଶ୍ରେୟ ହୋଇଥାନ୍ତା, ଭାଇନା । ତମେ ମୋ ବୁଦ୍ଧି ବାଉଲା କରିଦେଲ । ଆମେ ବାଘକୁ ଜଗୁଥିଲେ କାହିଁକି ? ଗାଈ ନଖୋଜି ବାଘ ଜଗିବା···"

ହଠାତ୍ ଧବାର ବାହୁନା ବନ୍ଦ ହୋଇଗଲା । ମଲା ଗାଈକୁ ଛାଡ଼ି ସରବାର ମୌଳିକ ପ୍ରଶ୍ନ ଆଡ଼କୁ ସେ ଚାହିଁଲା । ଠେଙ୍ଗାଟାକୁ ଜବର କରି ଉଞ୍ଚେଇ ସେ ସରବାକୁ ଆତ୍ମରକ୍ଷା କରିବାକୁ ଆଗ ସତର୍କ କରିଦେଲା । ତାପରେ ପଚାରିଲା, "କଅଣ କହିଲୁ ? ମୁଁ ବୁଦ୍ଧି ବାଉଲା କରିଦେଲି ତୋର ? ଭାରି ପଣ୍ଡିତଟାଏ ରେ ତୁ ! ଆବେ ଓଲୁ, ବାଘର ବାଟ ଓଗାଳି କି ଭୁଲ କଲେ କହିଲୁ ? କହ, ଆଉ ଥରେ କହ !"

ସରବା ବଡ଼ଭାଇ ଧବାର ରୁଦ୍ରମୂର୍ତ୍ତି ଦେଖିଲା । ପାଦେ ପଛକୁ ଘୁଞ୍ଚିଗଲା । ଇତି ମଧ୍ୟରେ ସରବାର ମସ୍ତିଷ୍କରେ ପୁନଶ୍ଚ ସେଇ ଦ୍ୱନ୍ଦ୍ୱ ଏକ ଅସମାହିତ ପ୍ରଶ୍ନ ଧରି ମୁଣ୍ଡ ଟେକି ଉଠିଥିଲା । ମୁଣ୍ଡ ତଳକୁ ପୋତି ବଡ଼ଭାଇର ଉଦ୍ୟତ ଠେଙ୍ଗାକୁ ନଗୁହିଁ ସେ ସ୍ୱୀକାର କରିଦେଲା, 'ଠିକ୍ କହୁଚ ଭାଇନା । ଗାଈକୁ ଅନ୍ଧାରରେ ଖୋଜିବା ଅପେକ୍ଷା ବାଘକୁ ଜଗିବା ଏକ ଭଲ ନୀତି ! ଆମେ ଆମ ନୀତିରେ ଅଟଳ ରହିଥିଲେ ଗଲା ରାତିରେ । ଏହା ନିଶ୍ଚିତ କଥା । କିନ୍ତୁ ଜୀବନକୁ ବଞ୍ଚାଇ ରଖିବା ପାଇଁ ମୁଖର ବାଟ କ'ଣ ଓଗାଳି ହେବ,

ଭାଇନା ? ବରଂ ଜୀବନକୁ ଅନୁସରଣ କରିଥିଲେ ଭଲ ହୋଇଥାନ୍ତା । ଆମେ ଭୁଲ କଲେ । ଆହା—ବିଚାରା ଟୋକିଟାକୁ ଆମର ରକ୍ଷା କରିପାରିଲେ ନାହିଁ ହୋ ଭାଇନା !"

ସରବାର ଏଇ ସ୍ୱୀକାରୋକ୍ତିରେ ଢବାକର ସନ୍ତୁଷ୍ଟ ହୋଇଯିବା ଉଚିତ ଥିଲା । କିନ୍ତୁ ତା ମୁଣ୍ଡରେ ତାର୍କିକତାର ଭୂତ ସବାର ହୋଇଯାଇଥିଲା । ନିଜର ତାର୍କିକ ପିତାଙ୍କଠାରୁ ଢବାକର ଏଇ ଦୁର୍ଗୁଣଟିକୁ ଉତ୍ତରାଧିକାରୀ ସୂତ୍ରରେ ହାସଲ କରିନେଇଥିଲା ।

"ତୁ ଗୋଟାଏ ଗଣ୍ଡ ମୂର୍ଖ !" ଢବା ଚହଟି ଉଠିଲା ଆଉ କହିଲା, "ଜୀବନକୁ ବଞ୍ଚାଇବା ପାଇଁ ମଣିଷ ମୁଖରୁ ବାଟ ଓଗାଳୁନାହିଁ ତ ଆଉ କ'ଣ କରୁଛରେ, ଅପଦାର୍ଥ ମୂର୍ଖ ଚଣ୍ଡାଳ ?

ସରବା ହସିପକେଇଲା । ଜବାବ ଦେଲା, "ତମେ ତ ସବୁବେଳେ ଓଲଟା କଥା କହ । ଲୋକେ ତମକୁ ବାଘୁଆ ବୋଲି କହନ୍ତି କାହିଁକି କି ଆଉ !"

ଢବାକର ଠେଙ୍ଗା ଉଞ୍ଚେଇ ରହିଥିଲା । ସରବା ମୁଣ୍ଡ ପତେଇ ଠିଆ ହୋଇଥିଲା । ଢବାକରର ଠେଙ୍ଗା ପଡ଼ିଲା ସରବାର ମୁଣ୍ଡ ଉପରେ । ସରବା ପଡ଼ିଗଲା । ମଲି ଗାଈ ଓ ମଲିଭାଇ ଢବାକରକୁ ଏକାଭଲି ହଗିଗଲେ । ଢବାର ମୁଣ୍ଡ ଚକ୍କର ଖାଇଗଲା । ସେ ମଧ୍ୟ ସେଇଠି ପଡ଼ିଗଲା ।

ଅନେକ ସମୟ ପରେ ଆଗ ହୋସ୍ ଆସିଲା ସରବାର । ସେ ଉଠି ବସିଲା । ବଡ଼ଭାଇ ଢବା ଅଚେତ ହୋଇ ପଡ଼ିଥାଏ ତଥାପି । ଗାଁବାଲାମାନେ ଦୂରରେ ଥାଇ ସମୁଦାୟ ଦୃଶ୍ୟଟିକୁ ଦେଖୁଥାନ୍ତି ।

ସେଦିନ ସରବାର ପ୍ରଚେଷ୍ଟାରେ ଢବାର ହୋସ୍ ଆସିଲା । ଦୁଇଭାଇ କଷ୍ଟେମଷ୍ଟେ ଗାଁ ପଚ୍ଛପଟ ରାସ୍ତାରେ ଆସିଲେ ଘର ପର୍ଯ୍ୟନ୍ତ । ସେଦିନ ରାତରେ ସେମାନେ ଘରେ ଥିବାର ପ୍ରମାଣ ପାଇଥିଲେ ଗାଁବାଲା । ମଝିରେ ମଝିରେ ଢବାର ଉଚ୍ଚସ୍ୱର ଶୁଭୁଥାଏ—ଗାଈ ଖୋଜିବା ନା ବାଘ ଜଗିବା—କୋଉଟା ଠିକ୍ ? କୋଉଟା ଠିକ୍ ?

ସରବାର ଉତ୍ତର ଶୁଭୁ ନଥାଏ କିଛି ।

ଗାଁବାଲାଙ୍କ ଭିତରେ କଥା ପଡ଼ିଥାଏ—ବାଘୁଆ ବାପ ବାଘୁଣୀ ମା, ଏଥିରୁ ଜନ୍ମ ହବ ଯେ ସେ ଆଉ କଅଣ ବା ହୁଅନ୍ତା ?

ପରଦିନ ଢବା ସରବାଙ୍କ ଘରୁ କୌଣସି ଉଁହୁଁ ନଶୁଣାଯିବାରୁ ଗାଁ ଲୋକେ ମନେ-କଲେ ଭାଇ ଦୁହେଁ ଶୋଇଚନ୍ତି—ଉଠି ନାହାନ୍ତି । କିନ୍ତୁ ଦିନ ପରେ ଦିନ ଢବା ସରବା ଭାଇଙ୍କର ସ୍ୱର ଆଉ ଶୁଣାଗଲା ନାହିଁ ପୁରୀ ଜିଲ୍ଲାର ସେଇ ବ୍ରାହ୍ମଣ ଶାସନରେ ।

କିନ୍ତୁ ଆଜି ପର୍ଯ୍ୟନ୍ତ ସେଇ ଶାସନରେ ସବୁ ଆପଦ ବିପଦ ବେଳେ ଗାଁର ମୁରବିମାନେ ଦୁଇପକ୍ଷ ହେଇ ପରସ୍ପର ସହିତ ଯୁକ୍ତିତର୍କରେ ମାତିଯିବାର ଦେଖାଯାଏ । ସେ ଯୁକ୍ତିର ରୂପ ହେଉଛି—"ଗାଈ ଖୋଜିବା ନା ବାଘ ଜଗିବା ?"

——

# 'ମହାପୁରୁଷେର ବାନୀ'

ଏମିତ ଗୋଟାଏ ସମୟ ଥିଲା ଯେତେବେଳେ ଭାରତୀୟ ପିଙ୍ଗଲ କୋର୍ଡ ବା 'ସିଆର-ପି. ସି' କହିଲେ ଓଡ଼ିଶାର ପାଠକମାନେ ଭକ୍ତକବି ମଧୁସୂଦନଙ୍କ ବର୍ଣ୍ଣବୋଧକୁହିଁ ବୁଝୁଥିଲେ । ଉଦାହରଣ ସ୍ୱରୂପ "ଅରଣା ମଇଁଷୀ ରହିଛି ଅନାଇଁ, ମଇଁଷୀର ପାଶ ନଯାଅ ଧନାଇ" ବା "ଗାଈ ଖାଉଅଛି କୋମଳ ଘାସ, ଗୋପୀ କେନା ଗୁଣ୍ଡୀ କରୁଛି ଗ୍ରାସ ।" ଏଗୁଡ଼ିକ ପ୍ରତ୍ୟେକେ ଗୋଟିଏ ଗୋଟିଏ ପିଙ୍ଗଲ କୋର୍ଡର ଆଇନ୍ ରୂପେ ଅମ ଓଡ଼ିଶାକୁ ଶାସନ କରିବାକୁ ଆସିଥିବା ବାହାରଆ ଶାସକମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିଲା । ଏପରି ଆଇନ ବଳରେ ଓଡ଼ିଶାର ଶହ ଶହ ଦରିଦ୍ର ନିରକ୍ଷର ବ୍ୟକ୍ତି ସେକାଳରେ ଦଣ୍ଡିତ ହୋଇଥିବାର ନଜିର ମଧ୍ୟ ଅଛି । ଅବଶ୍ୟ ଏସବୁକୁ ଇତିହାସ କେଉଁଠି କିପରି ରେକର୍ଡ କରିଛି ତାହା ଗବେଷଣାସାପେକ୍ଷ । କିନ୍ତୁ ଅମ କକେଇ ଶ୍ରୀ ପି. ଏନ୍ ଆଚାର୍ଯ୍ୟ ଏସବୁ ଗବେଷଣା କ୍ଷେତ୍ରରେ ଜଣେ ଅଗ୍ରଗଣ୍ୟ ବ୍ୟକ୍ତି ହୋଇଥିବାରୁ ତାଙ୍କର ଦୀର୍ଘ ଅଭିଜ୍ଞତାନୋପଲବ୍ଧ ସ୍ମୃତିଚାରଣକୁ ନିଃସନ୍ଦେହରେ ଏକ ଐତିହାସିକ ସାମଗ୍ରୀରୂପେ ବ୍ୟବହାର କରିପାରୁ । ଏଣିତ ଗଳ୍ପଟି ଅମର ପ୍ରାତଃସ୍ମରଣୀୟ ଐତିହାସିକ କକେଇଙ୍କ ଜୀବନ ମାଧ୍ୟାହ୍ନର କେତେକ ହାସ୍ୟ କୌତୁକ ଓ କୌତୂହଳୋଦ୍ଦୀପକ ମଜଲସ୍-କାହାବଳୀରୁ ସଂଗୃହୀତ ।

ଅମ କକେଇଙ୍କୁ ସ୍ଥାନୀୟ ଲୋକେ ଜଣେ ପ୍ରାଚୀନ ଜମିଦାରବଂଶୋଦ୍ଭବ ବ୍ୟକ୍ତି ରୂପେ ଖୁବ୍ ସମ୍ମାନ କରିଥାନ୍ତି ଅବଶ୍ୟ । କିନ୍ତୁ ବାସ୍ତବରେ ସେ ଆଉ ଜଣେ ଜମିଦାର ନୁହନ୍ତି କି ଜମିଦାରସୁଲଭ ଅହେତୁକ ଗାମ୍ଭୀର୍ଯ୍ୟବନ୍ତ ଗୁମ୍‌ବାଜ୍ ପ୍ରକୃତିର ମଣିଷ ନୁହନ୍ତି ମଧ୍ୟ । ଅମ ଗ୍ରାମାଞ୍ଚଳର ଲୋକେ ତାଙ୍କୁ ସାଧାରଣତଃ ସମ୍ମାନିତ କରିଥାନ୍ତି ତାଙ୍କର ସଦା ସରସ ମଉଜିଆ ବ୍ୟଙ୍ଗୋକ୍ତିଜର୍ଜରିତ ଅଭିବ୍ୟକ୍ତି ଗୁଡ଼ିକର ପ୍ରାଚୁର୍ଯ୍ୟ ସହିତ ଭରପୁର ହୋଇ ରହିଥିବା ଏକ ଐତିହ୍ୟସମ୍ପନ୍ନ ସ୍ୱାଭିମାନୀ ଐଶ୍ୱର୍ଯ୍ୟବନ୍ତ ଚେହେରାର ପବିତ୍ର ସମନ୍ୱୟ ଯୋଗୁ । ସହରାଞ୍ଚଳରେ ମଧ୍ୟ ଅମ କକେଇଙ୍କୁ କମ୍ ସମ୍ମାନ ମିଳେନାହିଁ ତାଙ୍କର ସେହି ଦୁଇ ଆପାତ ପରସ୍ପର ବିରୋଧୀ ଗୁଣସମ୍ପନ୍ନ ବ୍ୟକ୍ତିତ୍ୱଟିର କାରଣରୁ । ତେବେ, ସହରର ଐତିହ୍ୟହୀନ ଚଳନ୍ତି କାଳର ତଥାକଥିତ ସମ୍ଭ୍ରାନ୍ତ ଏଲିଟ୍ ଗୋଷ୍ଠୀ ଅମ କକେଇଙ୍କୁ ଦେଖନ୍ତି ଏକ ଭିନ୍ନ ଦୃଷ୍ଟିରେ ।

---

ପାଞ୍ଚଜନ୍ୟ, ୧୯୮୦, ମାର୍ଚ୍ଚ (ଦୋଳସଂଖ୍ୟା)

"ହେଇ, ଅଜା ଆସିଗଲେ ! ଏଥର ଆରମ୍ଭ ହବ ଓଡ଼ିଶାର ଇତିହାସ ଆଲୋଚନା ଚକ୍ର ।" ଅମ କକେଇଙ୍କୁ ସାଧାରଣତଃ ସହରୀ ଏଲିଟ୍‌ମାନେ ସ୍ୱାଗତ ଜଣାନ୍ତି ଏହିପରି ଭାଷାରେ ଯଦିଓରେ କହନ୍ତି ହେସ୍ତୁ ମିଶ୍ରିତ ସମ୍ମାନବୋଧର ଅବିଳତା ସହଜରେ ପରିଲକ୍ଷିତ ହେଲେ ମଧ୍ୟ ସେଥି ପ୍ରତି ଧଳାଙ୍କେ ଭ୍ରୂକ୍ଷେପ ନଥିଲା ଭଳି ମନେହୁଏ ଆମ କକେଇଙ୍କ ପରି ନିର୍ବିକାର ବ୍ୟକ୍ତିତ୍ୱଟିର ।

"ଓସ୍ୱେସ୍ ! ଏଥର ଆରମ୍ଭ ହେବ ଇତିହାସ—ମାଇଁ ଗ୍ରାଣ୍ଡ୍ ଚିଲ୍‌ଡ୍ରେନ୍ !" ଆଉ ଧଡ଼୍‌କିନା ଆମ କକେଇଙ୍କ ମୁହଁରୁ ବାହାରି ଆସେ ପଦେ ଐତିହାସିକସୁଲଭ ସ୍ୱତନ୍ତ୍ର ମନ୍ତବ୍ୟ ଯଦିଓରେ ଆମର ସହରୀ ଏଲିଟ୍‌ବର୍ଗ କେବଳ ଅପ୍ରସ୍ତୁତ ହୁଅନ୍ତି ନାହିଁ, ଗଡ଼ିଯାନ୍ତି ଲୁହ ଲେଞ୍ଜେରି ହବା ପର୍ଯ୍ୟନ୍ତ ହସରେ । ଦୀର୍ଘ ସମୟ ଧରି ହସର ଲହଡ଼ିରେ ଗଡ଼ଗଡ଼ା ଖାଉ ଖାଉ ହଠାତ୍ ପଡ଼ିଯାନ୍ତି ମଧ୍ୟ ଏକ ଶକ୍ତ ଲହଡ଼ିର ଅଣ୍ଡରକରେଣ୍ଟ୍‌ରେ । ସେଇଠୁ ସିଂହବୁଡ଼ା ଖାଇ ଓଟାରି ହେଇ ଯାଇ ରୁଦ୍ଧଶ୍ୱାସ ଅବସ୍ଥାରେ ଭାସିଉଠନ୍ତି କେଜାଣି କେଉଁଠି ଗମ୍ଭୀର ସମୁଦ୍ର ବକ୍ଷରେ । ସେହିପରି ଭୟାର୍ତ୍ତ ଅକତାମାକତା ଢଙ୍ଗରେ ପ୍ରକୃତରେ ସେମାନଙ୍କର ଗୃହିଣୀସବୁ ଗୋଟିଏ ଦଫା ହସ ସରି ଆଉ ଦଫା ଆରମ୍ଭ ପର୍ଯ୍ୟନ୍ତ ।

ଆମ କକେଇଙ୍କର ପ୍ରକୃତି ମୁଖ୍ୟତଃ ଜଣେ ବ୍ୟଙ୍ଗକାରର ପ୍ରକୃତି ସହିତ ତୁଳନୀୟ । ତେବେ ତାଙ୍କର ପ୍ରତ୍ୟୁତ୍ପନ୍ନମତିହିଁ ତାଙ୍କର ପ୍ରତିଷ୍ଠା ହାସରେ ଯଥେଷ୍ଟ ସହାୟକ ହୋଇଥାଏ —ସହରୀ ପଣ୍ଡିତ ଗୋଷ୍ଠୀଗୁଡ଼ିକ ଭିତରେ । ତାଛଡ଼ା ଏ ଗୋଷ୍ଠୀଗୁଡ଼ିକ ସାଧାରଣତଃ ପରସ୍ପରବିରୋଧୀ, ପରସ୍ପରର ଗୋଡ଼କଟା ଗୋଷ୍ଠୀ ରୂପେ ସହରର ବିଭିନ୍ନ ଅଞ୍ଚଳରେ ଗଢ଼ିଉଠିଥିବା ଯୋଗୁ ଦରକାର ବେଳେ ଏମାନଙ୍କ ମଧ୍ୟରେ ସଂଯୋଗ ଓ ସମନ୍ୱୟ ସୃଷ୍ଟି କରିବା ପାଇଁ ଆମ କକେଇଙ୍କୁ ଡାକରା ପଡ଼େ ମଧ୍ୟ ଯଥା ସମୟରେ । ଉଦାହରଣ ସ୍ୱରୂପ ଥରେ କଟକ ସହରର ଚକଟଗୋବିନ୍ଦ୍ ବଜାର ଅଞ୍ଚଳରେ ବାସ କରୁଥିବା ଦୁଇଦଳ କଲେଜ ଟୋକାଙ୍କ ଝଗଡ଼ାକୁ କେନ୍ଦ୍ର କରି ଓଡ଼ିଶାର ଦୁଇ ଅଞ୍ଚଳର ଦୁଇଟି କଳହରତ ସାଂସ୍କୃତିକ ଅନୁଷ୍ଠାନ ସହ ସମ୍ପର୍କିତ ଏଲିଟ୍‌ଗୋଷ୍ଠୀ ପ୍ରାୟ ଏଭଳି ଅବସ୍ଥାକୁ ଆସିଯାଇଥିଲେ ଯଦ୍ଦ୍ୱାରା ଭାରତ ମାନଚିତ୍ରରେ ପୂର୍ବଉପକୂଳରେ ଗୋଟିଏ ଚୁଟିଆ ମୂଷା ଆକୃତିର ଏକ କ୍ଷୁଦ୍ର ଭୂଖଣ୍ଡ ବା ଆମର ଏଇ ଓଡ଼ିଶା ରାଜ୍ୟ ଖଣ୍ଡିକ ଅନ୍ତତଃ ପ୍ରାଚୀନ ଯୁଗର କୋଶଳ, ଉତ୍କଳ ଓ କଳିଙ୍ଗ ପ୍ରଭୃତି ଅଂଶବିଶେଷରେ ସହେନା ସହେ ଖଣ୍ଡବିଖଣ୍ଡିତ ହୋଇଯିବାର ବଦ୍ଧମୂଳ ଆଶଙ୍କାଟି ଆଉ ମାତ୍ର ଚବିଶ ଘଣ୍ଟା ଭିତରେ ବାସ୍ତବତାକୁ ଭଜିବ ବୋଲି ଖବରକାଗଜ-ବାଲାମାନେ ହୁରି ପକାଇଲେ । କିନ୍ତୁ ଠିକ୍ ସେଇ ଚବିଶ ଘଣ୍ଟା ଭିତରେ ଯୁଦ୍ଧରତ ସାଂସ୍କୃତିକ ଅନୁଷ୍ଠାନ ଅନ୍ତର୍ଗତ କେତେକ ଦୂରଦୃଷ୍ଟିସମ୍ପନ୍ନ ବ୍ୟକ୍ତି ପରସ୍ପରର ଅଜାଣତରେ ଆସି ପହଞ୍ଚିଗଲେ ଆମ ଗାଁରେ, ଆଉ ଦେବ ଦାନବ ଯୁଦ୍ଧ କାଳରେ ଉଭୟ ପକ୍ଷ ଦେବର୍ଷି ନାରଦଙ୍କୁ ନିଜ ବିଶ୍ୱାସକୁ ନେବାପାଇଁ ସଚେଷ୍ଟ ରହିଲା ପରି ଆମ କକେଇଙ୍କ କାନରେ ପରସ୍ପର ବିରୋଧରେ ନାନା ଅଭିଯୋଗ ବଖାଣିସାରି ମୂଳ କଥାଟି ସେଥିା ଢଙ୍ଗରେ ପ୍ରକାଶ କରିଦେଲେ ।

"ଆଚ୍ଛା, ଅଜା ! କହିଲେ ଦେଖି, ଆମ ଓଡ଼ିଶାର ବଡ଼ କବିମାନଙ୍କ ଭିତରେ ଉତ୍ତର ଓଡ଼ିଶାର ରାଧାନାଥ ବଡ଼ ନା ପଶ୍ଚିମ ଓଡ଼ିଶାର ଗଙ୍ଗାଧର ବଡ଼ ?"

ଏଲିଟ୍‌ମାନଙ୍କର ଏଇ ଜଟିଳ ଦେବଦାନବୀୟ ପ୍ରଶ୍ନଟିକୁ କେନ୍ଦ୍ରକରି ଚକରଗୁହ ବଜାରର କଲେଜ ଟୋକାମାନେ ଯେଦିନ ଯେଉଁ ଗଣ୍ଡଗୋଳ କରି ଭାରତ ମାନଚିତ୍ରର ପୂର୍ବୋପକୂଳରେ ଆମର ଏଇ ଶ୍ରେଷ୍ଠ ଚୂଡ଼ିଆମୂଷା ଅଙ୍କିତର ରାଜ୍ୟଟିକୁ ମାତ୍ର ଚବିଶଟି ଘଣ୍ଟା ଭିତରେ ଛିନ୍ନଛତର କରିଦେବାକୁ ବସିଥିଲେ, ସୌଭାଗ୍ୟବଶତଃ ତାର ସମାଧାନ କରିଦେଲେ ଆମ ଜକେଇ ମାତ୍ର ପଦେ କଥାରେ—"ଅଚ୍ଛା କହିଲ –" ପଚାରିଦେଲେ ସେ ପରିସ୍ଥିତିର ସମ୍ମୁଖୀନ ହୋଇସାରିଥିବା ଦେଇ କଲାହରତ ଅଥଚ ଦୂରଦୃଷ୍ଟିହୀନ ଉଭୟ ପକ୍ଷର ଓଜ୍ଜଲବର୍ଗଙ୍କୁ, "ପାଚିଲା ଆମ୍ବ ବେଶୀ ମିଠା ନା 'ଲେଡ଼ା' ବେଶୀ ମିଠା ?"

ଚକରଗୁହ ବଜାରର ଦୁଇ ବିରୋଧୀ ସାଂସ୍କୃତିକ ଗୋଷ୍ଠୀର ଦୂରଦୃଷ୍ଟିହୀନ ଏଲିଟିଷ୍ଟ ପ୍ରତିନିଧିମାନେ ହଠାତ୍ କିଛି ବୁଝି ନ ପାରି ଆଁ କରି ଅନାଇ ରହିଲେ ଆମ ଜକେଇଙ୍କ ମୁହଁକୁ । ସେତେବେଳେ ଖରାଦିନ । ପ୍ରବଳ ଝାଞ୍ଜି ପିଟୁଥାଏ, ଆଉ ପ୍ରବଳ ଆମ୍ବ ଫଳଲ ଉତ୍ତୁରିଥାଏ ଆମ ଗାଁର ଆମ୍ବତୋଟାଗୁଡ଼ିକରେ । ଆମ ଜକେଇ ଉଭୟ ପକ୍ଷର ଲୋକଙ୍କୁ ପ୍ରଚୁର ପାଚିଲା ଆମ୍ବ ଖୁଆଇଥିଲେ ସେଥର ଆଉ ସେମାନେ ସାଙ୍ଗସୁଙ୍ଗା ହୋଇ ବିଦାହେଲା ପୂର୍ବରୁ ଉଭୟ ପକ୍ଷକୁ ଅଲଗା ଅଲଗା ଡାକି ତାଙ୍କ କାନରେ କହି ଦେଇଥିଲେ, "ମହାପୁରୁଷେର ବାଣୀ" ମନେ ଅଛି ତ ? ତୁମେ ଯଦି ଏଇଥିରେ ମାତିବ ତେବେ ଚବିଶ ଘଣ୍ଟାରେ ଜାରି ହୋଇଯିବ ସନ୍‌ଫେଟ୍ କାଲିମ ଆଇନ୍ ଆଉ ଥରେ ଏ ରାଜ୍ୟରେ । ଆଉ ସେଇଠୁ ଶୁଣିଥିବ ମହାପୁରୁଷେର ବାଣୀ—ମୋ ନାତିମାନେ ବୁଝିଲ ?"

ଆମ ଐତିହାସିକ ଜକେଇଙ୍କର ଏଇ 'ମହାପୁରୁଷେର ବାଣୀ' ଲେଖିଟି ସହିତ ବହୁସ୍ୱ ଏଲିଟ୍‌ବର୍ଗ ଅନେକଦିନୁ ଖୁବ୍ ପରିଚିତ । ଜକେଇଙ୍କ ମୁହଁରୁ ସେ ଶବ୍ଦ ଯୋଡ଼ିକ ଶୁଣି ଶୁଣି ହସରେ କୁରୁଳି ଉଠନ୍ତି ଉଭୟ ପକ୍ଷ । ସେଦିନ ବି ଦେଇଆ ହେଲା । ସେହିପରି କୁରୁଳୁଥିବା ଅବସ୍ଥାରେ ସେମାନେ ସାଙ୍ଗସୁଙ୍ଗା ହୋଇ ଫେରିଗଲେ ସହରକୁ । ତାପରେ ପ୍ରାୟ ଚବିଶ ଘଣ୍ଟା ଭିତରେ ଯୁକ୍ତରୂପେ ସାଂସ୍କୃତିକ ଗୋଷ୍ଠୀ ଦୁଇଟି ପକ୍ଷରୁ ଏକ ମିଳିତ ବିବୃତି ପ୍ରକାଶ ପାଇଥିଲା ସମ୍ବାଦପତ୍ରମାନଙ୍କରେ । ସେଥିରେ ଲେଖାଥିଲା ଯେ ଓଡ଼ିଶା ମାନଚିତ୍ରଟିକୁ ଯେଉଁ ବିଭିନ୍ନ ରାଜନୈତିକ ମହଲରେ ଯେଉଁସବୁ ଚୂଡ଼ିଆମୂଷାସୁଲଭ କିମ୍ବା ପ୍ରତିକ୍ରିୟା ପ୍ରକାଶ ପାଉଛି ସେ ସବୁ କିଛି ନୁହେଁ । ଆମ୍ବ ଓ 'ଲେଡ଼ା' ସମାନ—ଉଭୟ ରସାଳ ଓ ସୁମିଷ୍ଟ । ତେବେ ଓଡ଼ିଆ ସାହିତ୍ୟର ସମୃଦ୍ଧି ପାଇଁ 'ଲେଡ଼ା' ଶବ୍ଦର ଅଧିକ ପ୍ରଚଳନ ଆବଶ୍ୟକ । କାରଣ ଏକ ଅର୍ଥ ପ୍ରକାଶ ପାଇଁ ଦୁଇଟି ଶବ୍ଦ ବଦଳରେ ଗୋଟିଏ ଶବ୍ଦର ବ୍ୟବହାର ଅଧିକ ସୁବିଧାଜନକ । ଏହି ଦୃଷ୍ଟିରୁ ଓଡ଼ିଆ ସାହିତ୍ୟ ପ୍ରତି ପଶ୍ଚିମ ଓଡ଼ିଶାର ଅବଦାନ ସ୍ୱତଃ ସ୍ୱୀକୃତ ।

ସମ୍ବାଦପତ୍ରରେ ସେଦିନ ଯାହା କିଛି ଯଥାସମୟରେ ପ୍ରକାଶ ପାଇ ଆମ ମୂଷାମୁହାଁ ଓଡ଼ିଶାଟିର ଭୌଗୋଳିକ ମାନଚିତ୍ରଟିକୁ ଯେଭଳିଭାବେ ପରିକ୍ଷିତ କରିଥାଉନା କାହିଁକି, ଆମ କକେଇଙ୍କର ସେଇ 'ମହାପୁରୁଷେର ବାଣୀ' ଗଳ୍ପଟି ଯେ ପ୍ରକୃତରେ ଆମ ଦୂରଦ୍ରଷ୍ଟା ଏଲିଟ୍‌ମାନଙ୍କ ଆଖି ଖୋଲିବାର ଏକ ଗଳ୍ପ ଏଥିରେ ସନ୍ଦେହ ନଥିଲା କାହାର । ତେଣୁ ଆମ କକେଇଙ୍କୁ ସହସ୍ର ଏଲିଟ୍‌ମାନେ ଏଣିକି ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲାବେଳେ ଅନୁରୋଧ କରିଥାନ୍ତି ସାଧାରଣତଃ—"ଅଜା, ଆଜିର ଆସରରେ ଯେ 'ମହାପୁରୁଷେର ବାଣୀ' ଗଳ୍ପଟା ଆଉ ଥରେ କହିବେ ନିଶ୍ଚୟ ।"

"ଆରେ ନା—ସେଟା ଗଳ୍ପ ନୁହେଁ, ଇତିହାସ !" ଆମ କକେଇ ଚେତେଇ ଦିଅନ୍ତି ସହସ୍ର ପତ୍ରିତବର୍ଗଙ୍କୁ ପୁନର୍ବାର ! ଏହାପରେ ସ୍ୱ ଭାବିକ ପରମ୍ପରାର ଏକ ରାଜକୀୟ ହସ ନିଜର ଇଣ୍ଟେଗ୍ରେଡ୍ ଗ୍ରୀକୋ-ରୋମାନ ଚେହେରା ସମ୍ବଳିତ ମୁଖମଣ୍ଡଳରେ ପ୍ରତିଫଳିତ ହୋଇଉଠେ ତାଙ୍କର । ସେଇଠୁ ଆରମ୍ଭ ହୋଇଯାଏ ମଧ୍ୟ ସେ ସନ୍ଧ୍ୟାର ଆସର ।

"ଓ ୟେସ୍, ଦିସ୍ ଇଜ ହିଷ୍ଟ୍ରି !" ବେଶ ଦାବି ଦାବି ଉଚ୍ଚାରଣ କରନ୍ତି ସେଇ ପଦେ ଦୁଇପଦ ଇଂରେଜୀକୁ ତାଙ୍କର ସହାସ୍ୟ ଓଠ ଦୁଇଟି ଭିତରୁ । ପାକିଳ ମଞ୍ଜି ଶିଶ୍ କାଠରୁ ତିଆରି ଗ୍ରେଟ ଗ୍ରେଟ ଖିଲଗୁଡ଼ିଏ ପରି ଦୃଶ୍ୟମାନ ହେଉଥିବା ଦୁଇଖଣ୍ଡ ପାନଖିଆ ଦାନ୍ତ ସନ୍ଧିରୁ ଆମ କକେଇ, ଆଉ ସେଇଠୁ ଆରମ୍ଭ କରିଦିଅନ୍ତି ଖାଣ୍ଟି ଓଡ଼ିଆରେ, "ଦାରୋଗା ନେମାଇଁ ବାବୁଙ୍କୁ ମୁଁ ଦେଖିଛି ସେକାଳରେ ନିଜ ଆଖିରେ । ଓଃ, ହେଁ ବଡ଼ ଗୁଡ ହେଁ ବଡ଼ ମୁଣ୍ଡ, ପଞ୍ଚହାତିଆ ମଣିଷ—ଅବିକଳ ସୁବଳ ମହାକୁଡ଼ ଯେ ସେ ସେ ।"

ଆମ କକେଇଙ୍କର ଏଇ ଶେଷୋକ୍ତ ଉପମା ଭଳି ଉପମାଗୁଡ଼ିକୁ ହଜମି ନେବା ପାଇଁ ଆମ ସହସ୍ର ଏଲିଟ୍‌ମାନେ ମୂଳରୁ ମୂଳରୁ ଅକ୍ଷମ ହେଉନଥିଲେ ସ୍ୱଭାବତଃ ।

"ଅଜା, ସୁବଳ ମହାକୁଡ଼ କିଏ ମ ?" ଟୋକା ଏଲିଟ୍‌ମାନଙ୍କ ପକ୍ଷରୁ ଏତାଦୃଶ ବୋକା ପ୍ରଶ୍ନ ସମୂହରେ ବିଚଳିତ ନହେବା ଆମ କକେଇଙ୍କର ଅନ୍ୟ ଏକ ସ୍ୱଭାବ । ତଥାପି ଏପରି ପ୍ରଶ୍ନ ଶୁଣି ନଶୁଣି ତାଙ୍କର ହାସ୍ୟରତ ଓଠ ଦୁଇଟି ଅନ୍ତରାଳରେ ଯେପର୍ଯ୍ୟନ୍ତ ଦୃଶ୍ୟମାନ ହେଉଥିବା ଦନ୍ତପଂକ୍ତି ହଠାତ୍ ଅଦୃଶ୍ୟ ହୋଇଯିବାରୁ ତାଙ୍କର ମିଠା ଚେହେରାରେ କିଛିଟା ଝଟାଳିଆ ରସ ମିଶିଯିବା ପରି ମନେହୁଏ ସେତେବେଳେ ।

"ଆରେ ଧାତ୍ !" ବାସ୍ ଏତିକିରେ କିନ୍ତୁ ସେ ଆମ୍ବିଳା ଭାବଟି କଟିଯାଏ ତାଙ୍କ ବାଚନିକ ପରିପକ୍ୱତାରୁ, ଆଉ, ଇତ୍ୟବସରରେ ଓଠ କଣରୁ ଅଳ୍ପ ଝରିଆସୁଥିବା ପାନପିକ ବିନ୍ଦୁଟିକୁ ରୁମାଲ୍ କଣରେ ପୋଛି ନେଉ ନେଉ ସୁଦ୍ଧ ମିଠା ସ୍ୱରଟିଏ ହୃଦୟର କେଉଁ ଗହ୍ୱରତା ଭିତରୁ ଅଣ୍ଡାଳି ଆଣି ସେ କହିହାଉଥାନ୍ତି, "ସେ ଆମ ଫକୀରମୋହନ ମ । ପଢ଼ିନଟି ଗାଣ୍ଡି ପୁଅ ଅନ୍ଧା ଗପ ! ସେଇ ଅନ୍ଧାର ବାପ ସୁବଳ ମହାକୁଡ଼—"

ଆଉ ରେଫରେନ୍‌ସଟିକୁ ସମତୁଲ କରିବା ଲାଗି ସେ ହୁଏତ ଯେଉଁଠି ସୁବିଧା ଚିକଏ ପାଉଥାଇଛନ୍ତି ମନେକରି କହିପକାନ୍ତି—"ଆହେ ସେତେବେଳେ ଇଂରେଜ ଅମଳ । ସାହାବମାନେ ଏମିତିଆ ମଣିଷଙ୍କୁ ବାଛି ବାଛି ପୂରେଉଥିଲେ ବଡ଼ ବଡ଼ ସ୍କୁଲର ବାକିରିରେ, ବିଶେଷତଃ ପୁଲିସ୍ ସ୍କୁଲରେ । ତେବେ ଆମ ଓଡ଼ିଶା ପ୍ରଦେଶ ସେତେବେଳେ ଥାଏ ବଙ୍ଗଲା ସାଥିରେ । ଓଡ଼ିଶାର ସିନା ଗୋଟାଏ ସୁବଲ ମହାକୁଡ଼ ଉପରେ ସାହାବର ନଜର ପଡ଼ିଗଲା ଯେ ସେ ପଶିଗଲା ପୁଲିସ୍ କାମରେ । କିନ୍ତୁ ତା ପୂର୍ବରୁ, ସେତେବେଳେ ଆଉ ପଛକୁ ପଛକୁ ନଜରରେ ବେଶି ବେଶି ଅସୁଥିଲେ କଲିକତାର ପିଲେ । ନେମାଇଁ ଦାରୋଗାର ମା' ସାହାବର କଲିକତା କୋଠିକ ଦେଖାଇ କରୁଥିଲା ମିଲ୍‌କ୍ । ମେମ୍ ସାହାବ ଭାରି ଫ୍ଲିକ୍ ଠାକୁରାଣୀ ଉପରେ । ଠାକୁରାଣୀ ଉପରେ ଯେତେ ନୁହେଁ ତା କାନ ଧରି ଗୋଡ଼େଇ ଗୋଡ଼େଇ ଧପାଉଥିବା ଦୁଇ ପାଞ୍ଚ ବର୍ଷର ପିଲା ନେମାଇଁଟା ଉପରେ । ମେମ୍ ସାହାବ ଡ୍ୟାମ୍ ଫ୍ଲିକ୍ । ତାର କାରଣ ଅନ୍ୟ କିଛି ନୁହିଁ— ପିଲାଟା ହୋଇଥାଏ ଭାରି ଖୁରସୁରିଆ । ମେମ୍ ସାହାବ ଇସ୍ୟୁଲେଟ !"

ଆମ କକେଇଙ୍କର ଓଡ଼ିଆ କହିବା ଭଙ୍ଗି ଭାରି ମଜାଦାର । ବିଶେଷତଃ ମଜାକରି କଥା କହିଲାବେଳେ ତାଙ୍କ ଉଚ୍ଚାରଣରେ ଓଡ଼ିଆଟା ଶୁଭେ ଗୋଲ୍‌ଟି ଭଳି ଟିକେଟିକେ । ଦୂରରୁ ଶୁଣିଲେ ମନେହେବ କୋଉ ଖାନଦାନୀ କଟକୀ ମିଆଁ ଜଣେ । ହୁଏତ ଓଷ୍ଟିମେ ଅତର୍ ମାଖେକେ ଉର୍ଦ୍ଦୁ ଢଙ୍ଗରେ ଓଡ଼ିଆ ଶବ୍ଦର ଖୁସ୍‌ବୁଗୁଡ଼ାକ ଖୁବ୍ ତାରିଫ୍ କଲାପରି କଥା କହୁଛନ୍ତି । ତା ସାଙ୍ଗକୁ ଆମ କକେଇଙ୍କ ଗୁଣ୍ଡରେ ଅଂରେଜୀ ପଦେ ପଦେ ମିଶିଯିବା ବେଳେ ସମୁଦାୟ ବାୟୁମଣ୍ଡଳଟା ମାତ୍ ହେଉଉଠେ ଖୁସି ଆଉ ଖୁସ୍‌ବୁରେ ।

ସହରୀ ଏଲାଇଟ୍‌ମାନେ ଆମ କକେଇଙ୍କର ଏଇ ଉଚ୍ଚାରଣ ପଦ୍ଧତିକି ବେଶି ଏନ୍‌ଜୟ କରନ୍ତି ତାଙ୍କ କଥାର ବିଷୟବସ୍ତୁ ଅପେକ୍ଷା । ମେମ୍ ସାହାବ ଇସ୍ୟୁଲେସ୍—କହିବାବେଳେ କକେଇଙ୍କ ଓଠର ଠାଣି ଓ ଚଳ୍‌ଲତା ଏପରି ଏକ ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ ହୋଇଲେ ଦେଖିବାକୁ ଯେ ଦେଖିଲେ ଏଲାଇଟ୍‌ବର୍ଗଙ୍କ ନାହିମୁଣ୍ଡାରୁ ହସର ଫୁଆରା ବଜରା ଉଡ଼ନିଙ୍କ୍ ଧରି ଯଡ଼ବାଣ ଭଳି ଗୁଣଆଡ଼ କ୍ଷଣକେ ଆଲୋକିତ କରିବା ଛଡ଼ା ଗତ୍ୟନ୍ତର ନଥିଲା କିଛିଯ ।

"ଓ୍ବେଲ୍ ଓ୍ବେଲ୍···ମାଇଁ ଡିଅର୍ ଫ୍ରେଣ୍ଡସ୍ !" ଆମ କକେଇଙ୍କୁ ସାଧାରଣତଃ ବହୁ କଷ୍ଟରେ ଜବତ୍ କରିବାକୁ ପଡ଼େ ଏପରି ବେଳେ ତାଙ୍କ ଶ୍ରୋତୃବର୍ଗଙ୍କୁ । ବିଶେଷତଃ ସହରୀ ଏଲାଇଟ୍‌ଙ୍କୁ ଜବତ୍ କରିବା କେଡ଼େ କଷ୍ଟ ଏପରି ବେଳାରେ ବେଶ ଜଣା ତାଙ୍କୁ । କାରଣ, ଏ ଲୋକଗୁଡ଼ାକ ଅଦୌ ସିରିଅସ୍ ନୁହନ୍ତି; ଅଥଚ ଅନ୍ୟ ସିରିଅସ୍‌କୁ ସେମାନେ ନେଇନଅନ୍ତି ହ୍ୟୁମର ଢଙ୍ଗରେ ଆଉ ହ୍ୟୁମରକୁ ଧରିନଅନ୍ତି ସିରିଅସ୍ ଢଂଗରେ । ଏଇ ସ୍ବାଙ୍କ ବିକୃତ—ଜଣା ଆମ କକେଇଙ୍କୁ । ତେଣୁ ଶୀଘ୍ର ସେ ବିକୃତରୁ କଷ୍ଟ ପାଇ ସିଧା ବିଷୟବସ୍ତୁ ଉପରକୁ ଆସିଯିବାକୁ ବାଟଟିଏ ଖୋଜୁଖୋଜୁ ଆମ କକେଇଙ୍କୁ ଦିଶିଯାଏ ଯଥାର୍ଥମାର୍ଗ । ଏଥିପାଇଁ ଇତିହାସର ଆଶ୍ରାନେଇ ହଠାତ୍ ଡିକ୍ଲେୟାର କରିଦିଅନ୍ତି ସେ ପଦେ ଐତିହାସିକ ଉକ୍ତି ।

"ଆରେ ଷାର, ଏ ଓଡ଼ିଆଙ୍କ ଦେହ କିଛି ହବ ନାଇଁରେ କିଛି ହବ ନାଇଁ। ଯୁଦ୍ଧ କରିବେ ତ ମଲ୍ଲଯାକେ ଯୁଦ୍ଧ କରିବେ। ଶାନ୍ତିରେ ରହିବେ ତ ହାଣ ଖାଇବାଯାକେ ବସିଥିବେ ସେଇ ଠାଁକେ—ଉହୁଁ ଫିଙ୍କିବେ ନାଇଁ କି ଚର୍ଚ୍ଚିବେ ନାଇଁ ଟିକେ। ଆଚ୍ଛା କହିଲ— ଏ ଓଡ଼ିଆଏ କାହିଁ ବସିଥିଲେ ୧୮୦୩ ଯାକେ ? ବ୍ରିଟିଶ୍‌ବାଲେ ସବୁଆଡ଼େ ଜୟ କରିଗଲେ; ଏକା ପାରୁନଥିଲେ ଓଡ଼ିଆଙ୍କୁ। କାହିଁକି ନପାରୁଥିଲେ ? କହିଲ !"

ସେଇଠୁ ରୁମାଲ କାନ୍ଧରେ ପୁନର୍ବାର ଓଠ ପୋଛୁ ପୋଛୁ ଆମ କକେଇ ଜବାବ ଦିଅନ୍ତି ନିଜ ପ୍ରଶ୍ନର—କାହିଁକି ନା ଓଡ଼ିଆ ଷାର ଜାତି। ଯେ ଷାର ସେ କଷ୍ଟେ ଖାଇବ ତବଲ ମାଡ଼—ପହିଲେ ଶତ୍ରୁଠୁଁ ତାପରେ ଶତ୍ରୁର ବୋକଗୁରୁହାଙ୍କଠୁଁ। ଏହି କାରଣରୁ ଓଡ଼ିଶାଟା ଉପରେ ଆମର ଯୋଡ଼ାଏ ଦଫା କଲୋନିଆଲିଜିମ୍‌ର ଯୁଅ ବୋହିଗଲା ଏକା ବେଳକେ। ବ୍ରିଟିଶ୍-ବଙ୍ଗାଳୀ, ସିଂହ-ଶୃଗାଳ।

ଆମ କକେଇଙ୍କର ଐତିହାସିକ ଅନ୍ତର୍ଦୃଷ୍ଟି ଏତିକ ତୀକ୍ଷ୍ଣ ହେବାବେଳକୁ ତାଙ୍କର ଏଲିଟ୍ ଶ୍ରୋତାଗଣ ହସ ଚାପି ବେଶ୍ ସିରିଅସ ହୋଇଉଠିଥାନ୍ତି—ଇତିହାସର ଆନାଲିସିସ୍‌ଟିକୁ କାନେଇବାକୁ ।

କିନ୍ତୁ କକେଇ ଅମର ଆତୁର ଚାଲୁଖ୍। ଚଟାକ୍‌କିନା ସେ ସେଇ ମଉକାରେ ଘୂରାଇ ଦିଅନ୍ତି ଶ୍ରୋତାଙ୍କ ଆଟେନ୍‌ସନ୍ ଇତିହାସ ଛାଡ଼ି ତାଙ୍କ ଗଳ୍ପର ବିଷୟବସ୍ତୁ ଆଡ଼କୁ— "ହିନେ ଦେଖ୍ ଦେଖ୍ ମେମ୍‌ସାହାବ୍‌ର 'କି' ଉପରେ ନଇଚନ୍ତି ନେମାଇଁ କୃଷ୍ଣ ! ମେମ୍ ସାହାବ୍ ଇସ୍ପୀଲେସ୍। ଦୃଶ୍ୟଟି ଅବିକଳ ଯଶୋଦା ଧରିଚନ୍ତି ଅବା କୃଷ୍ଣଙ୍କୁ। ସ୍ୱାର ଦଶ ପନ୍ଦର ବର୍ଷ ଅନ୍ତେ ନେମାଇଁ ଦାରୋଗାଙ୍କ ଆବିର୍ଭାବ କଟକ ଜିଲ୍ଲାରେ। ସିଧା ମୁନସିର ଦାରୋଗା ଚାକିରିରେ। ଏତିକିବେଳେ ପଡ଼ିଲା ସେ କେଶ୍ ଆମ ଜମିଦାର ଇଲାକାର ଗୋଟିଏ ଗାଁରେ। କେଶ୍ ସେମିତି କିଛି ନୁହଁ ମ—ଏଇ ଗୋଟାଏ ମାମୁଲି ଚୋରି କେଶ୍। ମୌଜା ବମ୍ଭୁଣି ଅନ୍ତର୍ଗତ ଗୋଟାଏ ଚାଷୀ ଗାଁର ଜଣେ ଚାଷୀ ଲୋକର କଂସାଡ଼ାଲଟାଏ ରାତିବେଳା ଚୋରିହୋଇଗଲା। ଚୌକିଦାର ଖବର ଦେଇଦେଲା ଦଫାଦାର୍‌କୁ। ଦଫାଦାର୍ ପହଞ୍ଚିଗଲା ସଦର ଥାନାରେ। ଏଡ଼ଲା ଦାଖଲ ହେଇଗଲା ସାଥେସାଥ୍ ତ ଚଟାପଟ ସରଜମିନ୍ ତଦନ୍ତ ଉପରେ ହାଜର ହୋଇଗଲେ ସଦଳବଳେ ଦାରୋଗାବାବୁ। ଆତଙ୍କ ହୋଇଗଲା ଇନ୍‌କୁଆରି। ଲୋକ ଆଟ ଫଟାକ। ଦରୁନ୍ ମଝିରେ ଏକମାତ୍ର ଦ୍ରଷ୍ଟବ୍ୟ ବ୍ୟକ୍ତି ଦାରୋଗା ବାବୁ—ନେମାଇଁ ବାବୁ। ବାସ୍ତବିକ ବ୍ରିଟିଶ୍ ଶାସନକୁ ଧନ୍ୟ କହିବ। ସେତେବେଳେ ସରକାରୀ ଚାକିରିରେ ଶରୁଟ୍‌ମେଣ୍ଟ୍ ପୁଲିସ ଯାହାପାରେ ତାହା ଥାଉ ନା କାହିଁକି, ଡେପୁଟିମାନେ ଦିଶୁଥିଲେ ଡେପୁଟିଙ୍କ ଭଳି। ପୁଲିସ୍ ଦିଶୁଥିଲା ପୁଲିସ୍ ଭଳି। ଲକ୍ଷେ ଲୋକରେ ବାରି ହେଇ ପଡ଼ିବେ—ଆଉ ନେମାଇଁ ଦାରୋଗାଟି ଆମର ତ ସହଜେ ଫଲିବନ୍ତୁ ଅଖିଦୃଷ୍ଟିଆ। ପୁଣି ମେମ୍‌ସାହାବ ପାଳିଥାଏ ତାକୁ ପିଲାଦିନୁ। ପୁଲିସ୍ ହାକିମ ଚାକିରିଟିଏ ଦେଇ ସାହାବ ପଠେଇଥାଏ ତାକୁ ଏଠିକି ଆମ ଓଡ଼ିଶାକୁ। ଓଡ଼ିଆଙ୍କ ଗୋରୁ

ପଲଟ୍ଟଣର ଘଣ୍ଟିଏ ଭଳି ବଜାଉଥାଏ ଜାଣ । ଘଣ୍ଟ ଭଳି ହଣ୍ଟାଳୁଥାଏ ବ ଅବକଳ । ତା ହଣ୍ଟାଳରେ ହଗାନ୍ତ ନଗାନ୍ତ ହେଲେଣି ସେତେବେଳକୁ ଚଉକିଆ ଦଫାଦାର୍ ନାଲ ପଗଡ଼ିଆ କନେଷ୍ଟବଳ ପଂକ୍ତାକଯାକ । ଇନ୍‌କୁଅସ୍ତ ଆରମ୍ଭ ହଉଥାଏ ସେଇ ମାତ୍ର ।"

"କନ୍ତୁ, ଅଜା ! ଲୋକଟାର କ୍ୱାଲଫିକେସନ୍ ? ମାଟ୍ରିକ୍ୟୁଲେସନ୍ କମ୍‌ପେଟମ୍ ପାଶ୍ ଦେଇଥିବ ତ ! ନହେଲେ······"

"ଓ ନୋ ନୋ—" ଆମ କକେଇଙ୍କ ବ୍ୟଂଗ ମୁଖର ସ୍ୱର ସେଇଠି ଅଳ୍ପ ବନ୍ଦ କରିଦିଏ ନଜର ଜୀବନବ୍ୟାପୀ ଅବଦମିତ କୌଣସି ଅଜ୍ଞାତ ଅସ୍ୱାଭିମାନର ଉପସ୍ଥିତିକୁ । ସାମାନ୍ୟ ଅପ୍ରତିଭ ହୋଇ ନଜର ମୁଖଭଂଗୀର ମେକଅପ୍‌କୁ ଚଟାପଟ୍ ବଦଳାଇ ନଅନ୍ତି ସେ ସେତେବେଳେ, ଆଉ ଫେଁକନା ହସିଦେଇ କହନ୍ତି—"ମାଟିରକ୍ ନୁହେଁ ହୋ ! ଆମ ବେଳେ ବାଲରକ୍‌କୁ ଧରାଯାଉଥିଲା ମିନମମ୍ କ୍ୱାଲଫିକେସନ୍ ।"

"ଅଜା, ବାଲରକ୍ ? ସେ'ଟା ପୁଣି କ'ଣ ?" ସହସ୍ତ ଏଲଟ୍‌ମାନେ ଜାଣି ଜାଣି ଆମ କକେଇଙ୍କ ଟାଣନ୍ତି ଥୋଡ଼ାଏ ବେହେଲ ବାକ୍‌ବିତଣ୍ଡା ଆଡ଼କୁ; କାରଣ ସେମାନେ ବେଶ୍ ଜାଣିଥାନ୍ତି ଯେ ଆମ କକେଇଙ୍କ ପାଠପଢ଼ା ସେତେ ବେଶି ନୁହେଁ ଯାହା ମନେହୁଏ ତାଙ୍କର ପୋଷାକ ବସ୍ତ୍ରର ଆଚରଣ ଆଉ କଥାବାର୍ତ୍ତାରୁ ।

"ଓ ବାଲରକ୍ ?" ଆମ କକେଇଙ୍କ ଗ୍ରେକୋ-ରୋମାନ୍ ରୂପଗାମ୍ଭୀର୍ଯ୍ୟର କୌଣସି ଏକ ନର୍ଦ୍ଦିଷ୍ଟ ଅଂଶରୁ ହଠାତ୍ ଏକ ବାବଦୂକତାର ପ୍ରସ୍ରବ ପ୍ରବେଶ କରେ ତାଙ୍କ ସ୍ୱରରେ । ସେଇଠୁ ଆରମ୍ଭ କରନ୍ତି ସେ ତାଙ୍କ ବାଲ୍ୟକାଳରେ ପାଠ୍ୟ ପୁସ୍ତକ ରୂପେ ପ୍ରଚଳିତ ଖଣ୍ଡେ ବହୁଳ ପଠିତ ଗ୍ରନ୍ଥରୁ ଘୋଷା ହୋଇଥିବା କିଯଦଂଶର ଆବୃତ୍ତି ଏହିପରି—

"ଓ୍ୱାନ୍ ମର୍ଣ୍ଣି ଆଇ ମେଟ୍ ଏ ଲେମମ୍ୟାନ, ନଅର ମାଇଁ ଫାର୍ମ, ହୁ ହାଜ୍ ନଟ୍ ଗନ୍ ଭେର ଫାର୍ ହ୍ୱେନ୍ ହିକ୍ ଷ୍ଟିକ ବ୍ରୋକ୍···"

ତାଙ୍କର ପରହାସବ୍ୟଞ୍ଜକ ସ୍ୱରରୁ ସ୍ପଷ୍ଟ ଢଙ୍ଗରେ ଇଂରେଜୀ ଉଚ୍ଚାରଣଗୁଡ଼ିକ ଏଭଳି ବଚିତ୍ର ଶୁଭେ ଯେ ଏଲଟିଷ୍ଟ ଶ୍ରୋତୃମଣ୍ଡଳୀ ମାନେ ଚନା ଫୋଟକା ଫୁଟିଲା ଭଳି ଲଗାତର ଫାଟି ଫାଟି ହସି ହସି ଗଡ଼ିଯାନ୍ତି ।

ଶ୍ରୋତାମଣ୍ଡଳୀ କହିଁରୁ ଅଳ୍ପ ଧର ଆସିଲା ବେଳକୁ ଆମ କକେଇ ପୁଣି ମାଲେ ସୁଇନା ଫୋଟକାରେ ଅଗ୍ନି ସଂଯୋଗ କରିବାକୁ ପ୍ରସ୍ତୁତ ହୋଇ ବସିଥାନ୍ତି—"ଆଣ୍ଡ୍ ଦ୍ୟାଟ୍ ଇଜ୍ ବାଲରକ—ଫାଷ୍ଟ୍ ବୁକ୍ ଘୋଡ଼ା ଲେସନ୍—ପ୍ରାତଃସ୍ମରଣୀୟ ମହାନ ଲେଖକ ପ୍ୟାରମୋହନ ସରକାରଙ୍କ ପ୍ରଣୀତ ଫାଷ୍ଟ୍ ବୁକ୍‌ର ଘୋଡ଼ା ଲେସନ୍, ଅର୍ଥାତ୍ ଓ୍ୱାନ ମର୍ଣ୍ଣି ଆଇ ମେଟ୍···" ହସର ବିସ୍ଫୋରଣ ଏଥର ଶେଷ ହେଉ ହେଉ ଅଧ ଘଣ୍ଟାରୁ କମ ନୁହେଁ ନଶ୍ଚେ ।

ଏଇ ଅବସରରେ ପ୍ରଚୁର ଗୃହ୍ୱା ଜଳଖିଆ ଓ ପାନଖିଆ ଅଧ୍ୟାୟଟିଏ ଆରମ୍ଭ କରିଦିଆଯାଏ ଏଲ୍‌ଟମାନଙ୍କ ପକ୍ଷରୁ ଆୟୋଜିତ ପ୍ରଧାନ ପୃଷ୍ଠପୋଷକ ସେ ଯେ କେହି ହୁଅନ୍ତୁ ନା ପଛକେ—ଆମ କକେଇଙ୍କ ଯଥାଯୋଗ୍ୟ ଚର୍ଚ୍ଚା ଓ ସମ୍ମାନାର୍ଥେ । ତେବେ ଓଡ଼ିଶା ଇତିହାସର ଆଲୋଚନାଚକ୍ର ବନ୍ଦହୋଇଯାଏ ନାହିଁ ସେଠିକରେ, ବରଂ କ୍ରମେ ବେଶି ବେଶି । ବିଷୟବସ୍ତୁ ସମାଯୋଟ ହୋଇ ମାଡ଼ିବସେ· ଗୃହପାଖ୍ୟ ।

"ହଁ, ଅଜା, ମାର୍ ଗୁଲି ହୋ ଯେ କ୍ୱାଲିଫିକେସନ୍‌ଗତ ଯୋଗ୍ୟତାକୁ । ନେମାଇଁ ଦାରୋଗାଟା ତେବେ ସେଇ ତମ ବେଳର ବାଲଣକ୍ ନା କ'ଣ କହୁଚ ? ଅଚ୍ଛା, ନେମାଇଁ ଦାରୋଗା କେମିତି ଏନ୍‌କ୍ୱାର୍ କଲା ସେ ଗ୍ରେଟ୍ କେଶ୍‌ଟା କହୁନ କାହିଁକି ହେ !" ପାର୍ଟିର ପ୍ରଧାନ ପୃଷ୍ଠପୋଷକ ପକ୍ଷରୁ ଆସେ ସେ ଫର୍ମାଇସ୍‌ଟି । ଏଭଳି ପାର୍ଟିର ପ୍ରଧାନ ପୃଷ୍ଠପୋଷକ ଭାବେ ସାଧାରଣତଃ ବିଶିଷ୍ଟ ଜଜ୍, ଓକିଲ, ଡାକ୍ତର, ଇଞ୍ଜିନିୟର ବା ଅଧ୍ୟାପକମାନେ ନିମନ୍ତ୍ରଣ କରନ୍ତି ଆମ କକେଇଙ୍କୁ ତାଙ୍କ ବାସଭବନକୁ । ଆଉ ଶ୍ରୋତୃମଣ୍ଡଳୀ ଭାବେ ସ୍ୱତନ୍ତ୍ର ଭାବେ ନିମନ୍ତ୍ରିତ ହୋଇ ଆସିଥାନ୍ତି ମଧ୍ୟ ଅନେକ ବିଶିଷ୍ଟ ଭଦ୍ରବ୍ୟକ୍ତି ଓ ଭଦ୍ରମହିଳା ସେ ଆସରକୁ । ହଁ; ଏଲ୍‌ଟ୍‌ମାନଙ୍କ ନିକଟରେ ଆମ କକେଇ ବାସ୍ତବିକ ଜଣେ ସମ୍ମାନାସ୍ପଦ ବ୍ୟକ୍ତି ଏହି କାଟର ଏଥିରେ ସନ୍ଦେହ ନଥାଏ କିଛି ।

ନେମାଇଁ ଦାରୋଗା ସମ୍ପର୍କରେ ଶ୍ରୋତାମଣ୍ଡଳୀର ଏଇ ଧରଣର ଫର୍ମାସି ହୁଏତ ବେଶି ଉତ୍ସାହିତ କରିପାରେ ନାହିଁ ଆମ କକେଇଙ୍କୁ ।

"···ଟା ? ଦାରୋଗାଟା ? କ'ଣ କହୁଛ ହେ ? ନେମାଇଁ ଦାରୋଗା କ'ଣ ତମର ଏଇ ନେଣ୍ଟି ପୁଲିସ୍ ଇନ୍‌ସପେକ୍ଟର ନା ଏସ୍. ପି. କାଟର ମଣିଷଟିଏ କିଓ ?" ଚଳ ଚଳ ବଡ଼ ବଡ ଆଖି ଯୋଡ଼ିକ କକେଇଙ୍କର ସେତେବେଳେ ବାସ୍ତବିକ ହିଲେ ଦର୍ଶନୀୟ ବସ୍ତୁ—ଯାହାକୁ ଦେଖିଲେ ଦର୍ଶକ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ବାଧ୍ୟ ହେବ ଅନ୍ତତଃ ଓ ବାତାବରଣଟି ପୂର୍ବରୁ ଯେତେ ଲଘୁ ହୋଇ ପଡ଼ିଥାଉ ନା କାହିଁକି ଆମ କକେଇଙ୍କର ସେ ପ୍ରାଚୀନ ଐଶ୍ୱର୍ଯ୍ୟବନ୍ତ ଗୃହାଣୀରେ ହଠାତ୍ ସବୁ କିଛି ପୁଣି ଗୋଟାଗୋଟି ସଜଡ଼ାହୋଇ ହୋଇ ବାତାବରଣରେ ପ୍ରବେଶ କରିଯାଏ ଏକ ଗୁରୁଗମ୍ଭୀର ଅପେକ୍ଷମାଣ ଠାଣି ।

"ଆରେ ସେ କାଳର ଦାରୋଗା ଆଜିକାଲି ତମର ଏଇ ଆଇ ଜି. ଗୁଡ଼ାକ ଠୁଁ ବି—ହେଁ—ବୁଝିଲ ନା ? ନେମାଇ ଦାରୋଗା ସାମାନ୍ୟ ଲୋକ ନୁହନ୍ତି । କମିଶନର୍‌ର ମେମ୍ ସାହାବର 'କ' ଉପରେ ବସିଲାବାଲା ପିଲା ସେ । ବଙ୍ଗଳା ବିହାର ଓଡ଼ିଶା ୟୁନାଇଟେଡ୍ ପ୍ରଭିନ୍‌ସରେ ଓଡ଼ିଶା କୋଟାକୁ ଆଇ. ପି. ଏସ୍. କୋଟା ଭଳି ପଠା ହୋଇଥାଏ ତାକୁ ଯେତେବେଳେ ଖୋଦ୍ କଟକ ସଦର ଥାନାର ଇନ୍‌ଗ୍ରଧିଂ କରି । ସେକାଳରେ ଓଡ଼ିଶା କହିଲେ କଟକ ଜାଣ ହେ । ଦାରୋଗା ? ଟା ? ହାଡ଼ ଅଛି ତମ ଜିଭରେ—ଟା ପଦ ଲଗେଇଦେବ ସେଭଳି ଲୋକ ନାଁରେ ?"

ଆମ କକେଇଙ୍କର ସେଉଳି ସତର୍କବାଣୀ ଶ୍ରୋତାମଣ୍ଡଳୀକୁ କେବଳ ବସ୍ମିତ କରିଦେବା ପାଇଁ ଉଦ୍ଦିଷ୍ଟ ନଥାଏ । ସେମାନଙ୍କୁ ଇତିହାସ ସଚେତନ, କାଳ ସଚେତନ କରେଇବାହିଁ ଥାଏ ତାଙ୍କର ଲକ୍ଷ୍ୟ । ଶ୍ରୋତୃବର୍ଗ ମଧ୍ୟ ଆମ କକେଇଙ୍କର ରାଜକୀୟ ଚକ୍ଷୁ ଯୁଗଳ ଜରିଆରେ ସେଇ କାଳ ଚେତନାକୁ ଅନ୍ତରେ ପ୍ରାପ୍ତ ହୁଅନ୍ତି ଓ ଗୁମ୍‌ସୁମ୍ ହୋଇ ବସିପଡ଼ନ୍ତି । ସେଇ ଗୁମ୍‌ସୁମ୍ ଭିତରେ ଖାଲି ଟିକିଏ ଟିକିଏ ଗ୍' ଶୋଷଡ଼ା ଶବ୍ଦ ଛଡ଼ା ଆଉ ପ୍ରାୟ କିଛି ଶୁଣାଯାଏନା ସେତେବେଳେ । ଆଉ ସେଇଠୁ ଯାଇ ଆରମ୍ଭ ହୁଏ କକେଇଙ୍କର ପ୍ରତ୍ୟକ୍ଷଦର୍ଶୀ ବିବରଣି—ଇନ୍‌କ୍ଲୁଆସ୍ କାହାଣୀ ।

"ନେମାଇଁ ଦାରୋଗାଙ୍କୁ ଓଡ଼ିଶାରେ ପୋଷ୍ଟିଂ କରାଯିବା ପୂର୍ବରୁ ଆଜି ଭଳି ସେକାଳେ ମଧ୍ୟ ପ୍ରଚଳିତ ନିୟମାନୁଯାୟୀ ସ୍ଥାନୀୟ ଭାଷା ଅର୍ଥାତ୍ ଓଡ଼ିଆରେ ଭର୍ଣ୍ଣାକୁଲାର୍ ପାଶ୍ କରିବାକୁ ପଡ଼ିଥିବ ନିଶ୍ଚେ, ଆଉ ନେମାଇଁ ବାବୁ ଆମ ଓଡ଼ିଆଙ୍କ ଫାଷ୍ଟ୍‌ବୁକ୍ ବା ମଧୁ ରାଓଙ୍କ ବର୍ଣ୍ଣବୋଧ ଖଣ୍ଡିକୁ ପାଣି କରିଦେଇଥାନ୍ତି ଏତେ ଜୋର୍‌ରେ ଯେ ତାଙ୍କୁ ଓଡ଼ିଆ ପଢ଼ାଉ-ଥିବା ପଣ୍ଡିତ ଜଣକ ଗଦ୍‌ଗଦ ହେଇ କୁଆଡ଼େ କହିପକେଇଥିଲେ—ନେମାଇଁ ! ତୁମେ ପୁଲିସ୍ ନହେଇ ପ୍ରଫେସର୍ ହବା ଉଚିତ ଥିଲା । ମୁଁ ମୋ ଜୀବନରେ ଏତେ ଲୋକଙ୍କୁ ଓଡ଼ିଆ ଶିଖେଇଲିଣି, କିନ୍ତୁ ତମ ଭଳି ବୁଦ୍ଧିମାନ୍ ଛାତ୍ର ଦେଖି ନଥିଲି ଏ ଆଖି ।' ଏହାପରେ ପଣ୍ଡିତ ମହାଶୟ ନେମାଇଁ ଦାରୋଗାଙ୍କଠୁ ଗୁରୁଦକ୍ଷିଣା ଗଣ୍ଡିକ ହାସଲ କରୁ କରୁ ଅସଲ ଗୁରୁମନ୍ତ୍ରଟି ଦେଇଥିଲେ ସମ୍ଭବତଃ କାନରେ ତାଙ୍କର—ଦେଖ ବାବୁ, ଆମ ଓଡ଼ିଶାର ମଧୁରାଓ ଜଣେ ସାମାନ୍ୟ ଲୋକ ନୁହନ୍ତି । ସେ ଜଣେ ମହାପୁରୁଷ ଏହା ଅନସ୍ୱୀକାର୍ଯ୍ୟ । ଆଉ ତାଙ୍କ ପ୍ରଣୀତ ଏ ବର୍ଣ୍ଣବୋଧଟିକୁ ମହାପୁରୁଷଙ୍କ ବାଣୀ ଭଳି ଓଡ଼ିଆ ଜାତି ପୂଜା କରିଆସୁଛି । ତମେ ଏ ବାଣୀକୁ କଣ୍ଠସ୍ଥ କରିଛ । ଓଡ଼ିଆ ଜାତିକୁ ଯଦି ପ୍ରକୃତରେ ଶାସନ କରିବାକୁ ଆସିଚ, ତେବେ ବାବୁ ପ୍ରଥମେ ତାର ପ୍ରାଣକୁ ଚହ୍ନି ରଖ ଏଇ ଅନବଦ୍ୟ ମହାପୁରୁଷଙ୍କ ବାଣୀ ଜରିଆରେ । ତମ କଲମର ନିଶ୍ଚେ ଜୟ ହବ ହିଁ ହବ ।"

ସେକାଳର ସରକାରୀ ଚାକିରିରେ ପଶିବା ବ୍ୟବସ୍ଥା ଓ ଚାକିରି ପାଇଁ ଯୋଗ୍ୟତା ହାସଲ ବ୍ୟବସ୍ଥା ସମ୍ପର୍କରେ ଉପଯୁକ୍ତ ଆଲୋକପାତ କରିବାକୁ ଆମ କକେଇଙ୍କୁ ବେଶି ଗୁଡ଼ାଏ ବର୍ଣ୍ଣନା କରିବାକୁ ପଡ଼େ ନାହିଁ ସାଧାରଣତଃ । କାରଣ ସହରୀ ଏଲିଟ୍‌ମାନେ ସେ ବିଷୟରେ ଅଧିକ ସମୟ ନେବାକୁ ପ୍ରାୟ ଛାଡ଼ିଦିଅନ୍ତି ନାହିଁ ତାଙ୍କୁ ।

"ଓହୋ, ସେଗୁଡ଼ାକ ତ ଜଣାଶୁଣା କଥା । ବର୍ଣ୍ଣବୋଧ ଏବେ ବି ପଢ଼ା ହଉଚି ଆମ ଆଇ.ଏ.ଏସ୍., ଆଇ.ପି.ଏସ୍. ବାଲାଙ୍କୁ ଯେଉଁମାନେ ନନ୍‌ଓଡ଼ିଆ । ଏଥର ଟପିକ୍ ଉପରକୁ ଆସନ୍ତୁ ନା ଅଜା !" ପୃଷ୍ଠପୋଷକ ଏଲିଟ୍ ଜଣକ ଇତିମଧ୍ୟରେ ଗୋଟାଏ ଧଇଁଟା ହାଇମାରି ଦାଣ୍ଡ଼ଅମ କକେଇଙ୍କୁ ସତର୍କ କରିବାକୁ ବସିଥାନ୍ତି ସମ୍ଭବତଃ ତାଙ୍କ ହାତ ଘଡ଼ିରେ ଉପସ୍ଥିତ ସମୟ ଟିକକ ସମ୍ପର୍କରେ । କିନ୍ତୁ କକେଇ ଆମର ତହୁଁ ବଡ଼ ବୁଦ୍ଧିମାନ୍ ବ୍ୟକ୍ତି ।

'ହଉ ହେଲା', ପୃଷ୍ଠପୋଷକଙ୍କୁ କୋଉଠାଏ ଆଚ୍ଛା ଚୋଟ୍ ଦେଇ ତାଙ୍କୁ ତାଜା କରିଦେବା ଲକ୍ଷ୍ୟରେ ସେ ହଠାତ୍ ନିଜ ହାତଘଣ୍ଟାକୁ ଅନେଇ ଦେଇ ଚମକି ପଡ଼ିବାର ଅଭିନୟ କରୁକରୁ କହିପକାନ୍ତି, "ଆରେ, ଏତେଗୁଡ଼ାଏ ବେଳ ହୋଇଗଲାଣି ନା କଅଣ ମ ! କେମିଁଭି ଦାରୋଗାଙ୍କ ବମ୍ଫୁସ୍ ମୌଜା ଗ୍ରେସ୍ ଜେଣ୍ ଇନ୍‌କ୍ୱାସ୍ ଇତିହାସ ତେବେ ଆଜିପାଇଁ ଏଇଠୁ ବନ୍ଦ । କାଲିକି ଦେଖିବା ତେବେ ସେ କଥା ।" କହୁକହୁ ଆମ କକେଇ ତତବର ହୋଇ ଉଠିପଡ଼ନ୍ତି ବସିବା ଜାଗାରୁ ।

ଆମ କକେଇ ଜଣେ ବ୍ୟଙ୍ଗକାର ହେଲେ ମଧ୍ୟ କମ୍ ଆତ୍ମାଭିମାନୀ ନୁହନ୍ତି, ଆଉ ସେ ଥରେ ଉଠିଲେ ତାଙ୍କୁ ବସେଇ ରଖିବା ସମ୍ଭବ ନୁହଁ—ଜାଣନ୍ତି ମଧ୍ୟ ଆମର ସହରୀ ଏଲିଟ୍ ଗୋଷ୍ଠୀ । ତା ଛଡ଼ା ଆମ କକେଇଙ୍କର ବଜାରଦର ଭଲ ମଧ୍ୟ କିଛି କମ୍ ନୁହେଁ ଜଣେ ଗଳ୍ପ-କଥକ ଭାବେ । ସହରର ବିଭିନ୍ନ ଗୋଷ୍ଠୀ—ବିଶେଷତଃ ଆମ ମୁଣ୍ଡାମୁହାଁ ଓଡ଼ିଶା ରାଜ୍ୟ ଖଣ୍ଡକର ପଶ୍ଚିମ ଦକ୍ଷିଣ ଉତ୍ତର ବା ଉପକୂଳ ପ୍ରଭୃତି ଅଞ୍ଚଳର ବାସିନ୍ଦାମାନଙ୍କୁ ନେଇ ଏକା ସହରରେ ଗଢ଼ାଯାଇଥିବା ହରେକ ନାମଧାରୀ କଳହରତ ଗୋଷ୍ଠୀଙ୍କ ମଧ୍ୟରେ ନାରଦ ପରି ଆତଯାତ ହେଉଥିବାରୁ ଆମ କକେଇଙ୍କୁ କୌଣସି ଗୋଷ୍ଠୀ ସହଜେ ହାତ ଛଡ଼ା କରିବାକୁ ଚାହାନ୍ତି ନାହିଁ ଯେ କୌଣସି ଅବସ୍ଥାରେ ।

"ଅଜା, ଅଜା—", ଫଶୀଭ ଆସରର ପୃଷ୍ଠପୋଷକ ସମେତ ପ୍ରାୟ ସବୁ ସଭ୍ୟ ସଭ୍ୟା ଏପରିକି ଘରର ପିଲାଛୁଆ ଚାକର ବାକର ଏକାବେଳକେ ଘେରିଯାନ୍ତି ଚାରିଆଡ଼ୁ, ଆଉ ଏକାବେଳକେ ବିକଳ ଅନୁରୋଧ ଆସେ ଚତୁର୍ଦ୍ଦିଗରୁ, ସମ୍ମିଳିତ କଣ୍ଠରୁ—ଅଜା, ମରିଯିବୁ, ମରିଯିବୁ । ଅଧିଲା ଗପଟା ଶୁଣିବୁ ଶୁଣିବୁ ବୋଲି ଅନେଇ ବସିଚୁ । ଆଉ ତମେ ଚାଲିଯିବାକୁ କହୁଚ ! ମରିଯିବୁ···ମରିଯିବୁ ।"

ଆମ କକେଇ ଆତ୍ମାଭିମାନୀ—ଅବିକଳ ପୁରୁଣାକାଳର ଜମିଦାରଙ୍କ ପରି ଆତ୍ମା-ଭିମାନୀ । କିନ୍ତୁ ତାଙ୍କର ଅଭିମାନର କାରଣ ଭିନ୍ନେ ରକମର—ସାମନ୍ତବାଦୀ ଅଭିମାନ ନୁହେଁ ସେ ନିଶ୍ଚୟ ।

ଶ୍ରୋତୃମଣ୍ଡଳୀକୁ ଏହିପରି ସତର୍କ କରିଦେଇ ଆମ କକେଇ ପୁଣିଥରେ ଆସନ ଧରନ୍ତି । କିନ୍ତୁ ଏଥର ଟପିକ୍ ଉପରକୁ ଆସିବା ପାଇଁ ବେଶି ବେଳ ଲଗେନାହିଁ ତାଙ୍କୁ । ତେବେ ଆମ ସହରୀ ଏଲିଟ୍‌ମାନଙ୍କୁ ଟିକେ ଡାଗିଦା କରିଦେବା ଉଦ୍ଦେଶ୍ୟରେ ଆଗ୍ରୁ ପଦେ କଡ଼ାକଥା ଶୁଣେଇଦଅନ୍ତି କେବଳ—"ଆରେ ବାବୁ, ମୁଁ ଏଠି ଅଜା-ନାତି ରହସ୍ୟ କରିବାକୁ ଆସିନାହିଁ ହୋ । ତମେ କଣ ଭାବୁଚ ମୁଁ ଏସବୁ ମନଗଢ଼ା କଥା ତୋଳି ଫାନ୍ଦି ବଖାଣି ଲାଗିଚି—ଖୋଦ୍ ଆଖିରେ ଦେଖା କଥା, କାନରେ ଶୁଣା କଥା । ସିଓର ହିଷ୍ଟ୍ରି ! ତମ ମୁଣ୍ଡାମୁହାଁ ଓଡ଼ିଶା ରାଇଜରେ ଥରେ ଏଇଭଳି ବିଗ୍ରେଇ ହଉଥିଲା—ପବ୍‌ଲିକ୍‌ଲି । ଆଉ ମୁଁ ତ ଶୁଣୁଚି ଏବେବି କୁଆଡ଼େ ଚାଲିଚ ଏମିତିକା ବିଗ୍ରେଇ ଏଇ ସ୍ୱାଧୀନ ଭାରତରେ, ଏଇଠି ଏଇ ମୁଣ୍ଡାମୁହାଁ ଓଡ଼ିଶା ରାଇଜରେ ।"

ଆମ କକେଇଙ୍କର ଚଳ ଚଳ ବଡ଼ ବଡ଼ ଅଖି ହଲକ ଅବସରରେ ବସିଥିବା ବୃଦ୍ଧର-ପଡାଙ୍କଠୁ ଆରମ୍ଭକରି ଅଫିସର୍ ଗୋଷ୍ଠୀର ପ୍ରତ୍ୟେକ ଉପସ୍ଥିତ ସଭ୍ୟମାନଙ୍କ ଆଖିକୁ ପଟରେ ଅନେଇ ଦେଇ ଯାଉଥାଏ ନେଜେବେଳକୁ । ଆଉ ସବୁ ଅଖି ମିଟିମିଟି ଅବସ୍ଥାକୁ ପ୍ରାପ୍ତ ହେଇ-ଆସୁଥିବା ବେଳକାଳ ଉଣ୍ଡି ଆମ କକେଇ ଆରମ୍ଭ କରନ୍ତି—

"ନେମାଇଁ ଦାରୋଗାକୁ ଦେଖିବ ସତେ ସରଜମିନ୍ ତଦନ୍ତ ବେଳାରେ । ଓଃ, କ ସେ ଚେହେରା ବାସ୍ତବକ୍ । ହେ ଲମ୍ବ, ହେ ମୁଣ୍ଡ, ହେ ମୋଟ ମୋଟ ବାହୁ, ଆଉ ତା ପାଇଁକୁ ସେ ରାହୁଆ ପାଟି । ବଂଗଳାମିଶା ଖଣ୍ଡି ଓଡ଼ିଆରେ ଦଫାଦାର ନବଘନ ରାଉଳଟାକୁ ହାଙ୍କିଦବ ସେ ଯେତେବେଳେ, 'ନୋବୋଘନ୍ କୁଥାଏ ଗେଲ୍ ସେ ଶାଲ୍ ମୁଦେଇ ବାହାଷ୍ଟ—ହାଜର୍ କର୍ ଶାଲାକୁ ଆମାର୍ ସାମ୍ନାରେ—ଘନିଆ ଦଫାଦାର ଗାଁ—ଫାଟ୍ ମୁରାର୍ ।"

ଆମ କକେଇଙ୍କର ମୁହଁରୁ ଅବର୍ଜ୍ୟ କଥା ବାହାରେ ନାହିଁ ଅବଶ୍ୟ ସେତେ ବେଶି କିନ୍ତୁ ଇତିହାସକୁ ଅଖିଅଗରେ ଦେଖି ପକେଇବା ବେଳଟା ଆସିଗିବା ମାତ୍ରେ ସେ ପ୍ରାପ୍ତ ଏହିପରି ଶବ୍ଦ କେତୋଟି ଅଜାଣତରେ ଆଉ ଖୁବ୍ ସ୍ୱଚ୍ଛନ୍ଦରେ ମଧ ବ୍ୟବହାର କରିପାରନ୍ତି । ଯଦି ଏ ଧର୍ମକରେ ପରେ ତାଙ୍କୁ କେହି ସଚେତନ କରିଦିଏ ଆଉ ପଚାରେ, "ଅଜା, ସେଦିନ ସେଠି ସବୁ ପିଲ୍ଲ ମାଇପେ ଭର୍ତ୍ତି ହେଇଥିଲେ ସେ ସଭାରେ ! ତମ ମୁହଁରୁ—?"

ଏହାର ଉତ୍ତରରେ ଆମ କକେଇ ଅଳ୍ପ ହସିଦେଇ କହନ୍ତି, "ଇତିହାସକୁ ସଗ୍ଭର ସାଚ ଇତିହାସକୁ । ସେଇ କହିବ କାହିଁକ ବାହାରିଲା ମୋ ମୁହଁରୁ ଏ ବାଣୀ ।"

ସେ ଯାହାହେଉ ପଛକେ, ନେମାଇଁ ଦାରୋଗାର ସରଜମିନ୍ ତଦନ୍ତ ବ୍ୟାପାର ଯେତେବେଳକୁ ବେଶ୍ ଜମିବାକୁ ଆରମ୍ଭ କରିଥାଏ ସେଦିନ ଆସରରେ—ବିଶେଷତଃ ଆମ କକେଇଙ୍କ ବର୍ଣ୍ଣିତ ଘନିଆ ଦଫାଦାର ପ୍ରତି ନେମାଇଁ ଦାରୋଗାର ପରମ ସମ୍ବୋଧନ ପରେ ପରେ । ସହସା ଏକ୍‌ଟ୍‌ମାନେ ଖେଁ ଖେଁ ହେଇ ହସି ଉଠୁଥାନ୍ତି । ଠିକ୍ ସେତିକ-ବେଳେ କକେଇଙ୍କ ଐତିହାସିକ ବର୍ଣ୍ଣନାଟି ଆଗେଇ ଆସେ ଏକ ପ୍ରତ୍ୟକ୍ଷଦର୍ଶୀ ବିବରଣୀ ଧାରାରେ—

"କସୁରୀ ମୌଜାର ତାଲ ଗ୍ରେପ୍ତ ମକଦମାର ମୁଦେଇ ଗୋପୀ ପଧାନକୁ ଘନ ଦଫାଦାର ସମେତ୍ତ ଘୁର ପାଞ୍ଚଜଣ କନେଷ୍ଟବଲ୍ ସିଧା ଟେକ ଅଣି କଚି ଦଅନ୍ତି ଲଥିକନା ନେମାଇଁ ଦାରୋଗା ସାମନାରେ ଆଉ ରପୋର୍ଟ କରନ୍ତି ଲୋକଟାର ଉପସ୍ଥିତ ଧର୍ମକରେ—ହେଇ ହଜୁର୍ ! ମୁଦେଇ ଗୋପୀ ପଧାନ ହାଜର ହେଁ !

"ନେମାଇଁ ଦାରୋଗାଙ୍କର ସ୍ୱଭାବତଃ ନାଲ୍ ଆଉ ଢେଗା ଢେଗା ଅଖି ଯୋଡ଼ାକ ଏତେ ଶକ୍ତିଶାଳୀ ଯେ ପୁଲିସବାଲା ହିସାବରେ ସାଧାରଣତଃ ବେଶି ଗୁଡ଼ାଏ ଜବାବ୍ ସୁଆଲ କରିବାକୁ ପଡ଼େନାହିଁ ତାଙ୍କୁ ସରଜମିନ୍ ଉପରେ ସତ୍ୟ ଉଦ୍‌ଘାଟନ ପାଇଁ ।

ସେଇ ଅଗିରେ ଗୋପୀ ପଧାନର ଆପାଦମସ୍ତକ ନିରୀକ୍ଷଣ କରୁ କରୁ ଦାରୋଗା ବାବୁଙ୍କ ପ୍ରଥମ ପ୍ରଶ୍ନଟି ବାହାରିଥିଲା ସେଦିନ—ତୋମାର ନାମ୍‌ଟା କି ?

"ଆଜ୍ଞା, ହଜୁର, ମୋ ନା ଗୋପୀ—"

"ହୁଁ, ଗୋପୀ—ଆଚ୍ଛା କି ହୟେଲ ?"

"ଆଜ୍ଞା ହଜୁର, ରାତି ବିକାଳ, ଗଲାଧନ କୋଳଥ ଅଟକାଳ ଖାଇ ଦେଲାରୁ ପେଟ ବିଗିଡ଼ି ଯେଲା । ଚାଲ ଧରି ଧାଉଁଥିଲି ବାହାରକୁ, ପାଣି ଯାଇବା ବେଳକୁ ଚାଲ ତ ଖୋଜୁଚୁ ଆଜ୍ଞା..."

"କି ବଲିଲ, କି ବଲିଲ, ଚାଲ ଧରି ଯାଇଛିଲ ବାହାରକେ—ତୁମି ମିଥ୍ୟାବାଦୀ !"

ଆମ କବେଇଙ୍କ ସଂକ୍ଷିପ୍ତ ବର୍ଣ୍ଣନା ପ୍ରାୟ ଏଇଠି ପହଞ୍ଚିବା ବେଳକୁ ହଠାତ୍ ଏଲିଟ ମହଲରୁ ଏଡ଼େ ଜୋର୍‌ରେ ଗୋଟାଏ ସମ୍ମିଳିତ ହସର ଧ୍ୱନି ଶୁଣାଯାଏ ଯେ ସେଥିରେ ଘର ବାହାରେ, ରାସ୍ତା ଉପରେ ଚାଲୁଥିବା ପଥିକମାନେ ମଧ୍ୟ ସମସ୍ତେ ସମସ୍ତେ ଆକୃଷ୍ଟ ହୋଇ ଆସରର ପୃଷ୍ଠପୋଷକଙ୍କ ପିଣ୍ଡା ଉପରକୁ ଚଢ଼ି ଆସନ୍ତି ।

କିନ୍ତୁ ଏସବୁ ସଙ୍କଟ ମୁହୂର୍ତ୍ତରେ ଆମ କବେଇଙ୍କର ସମ୍ଭ୍ରାନ୍ତ ଗ୍ରେକୋ-ରୋମାନ ବେହେରାଟି ଆହୁରି ଗାମ୍ଭୀର୍ଯ୍ୟବନ୍ତ ହୋଇ ମଧ୍ୟ ଅତ୍ୟନ୍ତ ଧୈର୍ଯ୍ୟ ଓ ମର୍ଯ୍ୟାଦା ସହକାରେ ସେ ଏକ ବିଶାଳକାୟ ସାମୁଦ୍ରିକ ପୋତ ପରି ସବୁ ଲହଡ଼ି କାଟି କାଟି ବେଶ୍ ଦ୍ରୁତ ଗତିରେ ଲକ୍ଷ୍ୟସ୍ଥଳକୁ ଆଗେଇ ଚାଲନ୍ତି ।

ନେମାଉଁ ଦାରୋଗାର ସେଇ ମିଥ୍ୟାବାଦୀ ଆକ୍ଷେପଟି ଚାଷୀ ଗୋପୀ ପଧାନକୁ ଖାଇ କାଟିବାର କଥା । ଲୋକଟା ମୁହଁ ଆଁ କଲେଇ ପୁଲିସ ହାକିମକୁ ନିଜର ସତ୍ୟବାଦିତା ସମ୍ପର୍କରେ ବୁଝେଇବା ପାଇଁ ଆଉ ଥରେ ମାତ୍ର ଆଁ ମେଲେଇଥାଏ କି ନାହିଁ ଠୋ'କିନା ଗୋଟାଏ ବ୍ରହ୍ମାସ୍ତ୍ରପଡ଼ାରେ ଲୋଟଣିପାରା ଭଳି ସେଇ କେଇଟା ମାରି ବସିପଡ଼େ ଯେ, ଅଉ ବୁଢ଼ା ଲୋକଟା ପିଲାଙ୍କ ଭଳି କଇଁ କଇଁ କାନ୍ଦିବା ଅବସ୍ଥାରେ ଶୁଣିବାକୁ ପାଏ—"ମିଥ୍ୟାବାଦୀ ! ତୁମି ଚାଲ ଧରିଆ ଯାଇଛିଲ ବାହାରକେ ନାଇଁ ? କାନୋ ଯାଇଛିଲ ? ତୋମାର ନାମଟା ତ ଗୋପୀ—ମହାପୁରୁଷେର ବାଣୀ ଆଛେ : ଗୋପୀ ଜେନା ଚାଷୀ କରିଛେ ଚାଷ, ଗାଈ ଖାଉଅଛୁ କୋମଲ ଘାସ । ତୁମି ତ ଚାଷ କରିବାକେ ବାହାର ଯାଇଛିଲ—ଚାଲ ଧରି ବାହାର ଯାଇଛିଲ ବଲିଲ କେନ ? ମିଥ୍ୟାବାଦୀ ଆରେ କେ ଅଛେରେ—ଏ ମିଥ୍ୟାବାଦୀକେ ହାତକଡ଼ା ପକାଅ । ଶାଲାର ମହାପୁରୁଷେର ବାଣୀକେ ମିଥ୍ୟା ପ୍ରମାଣିତ କରେଛେ । ପକାଅ ହାତକଡ଼ା, ବୁଲାଓ ଦୁସରା ସାକ୍ଷୀ କେ ଆଛୁ..."

"ଦୁସରା ସାକ୍ଷୀ ଆଉ କିଏ ବା ହବ ?" ଆମ କବେଇ ଏତେବେଳକେ ଯାଇ ଲକ୍ଷ୍ୟ କରନ୍ତି ତାଙ୍କର ଶ୍ରୋତାମାନଙ୍କ ଅସଲ ହାଲତକୁ । ଲୋକଗୁଡ଼ାକ ମହୁଲି ଫୁଙ୍କୁଥିବା ମଣିଷର ଗଲା ଭଳି ଫୁଲୁଥାନ୍ତି ଖାଙ୍କୁଥାନ୍ତି । ଚୁପା ହସ ଆଉ ବେଶି ବେଳ ଚାପି ହୋଇ

ରହୁଥାରେନା । ଫୁଟେ ଶୂନ୍ୟରେ ଘଡ଼ଘଡ଼ି ପରି । କିନ୍ତୁ ଆମ କବେଇଙ୍କ ପ୍ରାଚୀନ ଜମିଦାରବଂଶୋଦ୍ଭବ ଚେହେରାଟି ଦିଶୁଥାଏ ସମ୍ପୂର୍ଣ୍ଣ ନିରପେକ୍ଷ, ସମ୍ପୂର୍ଣ୍ଣ ଉଦାସ । ତାଙ୍କୁ ଦେଖିଲେ ମନେହେବ ସେ ପ୍ରକୃତରେ କୌଣସି ଗଳ୍ପ କହୁନଥାନ୍ତି—କହୁଥାନ୍ତି ଇତିହାସ –ଅଙ୍କେ ନଭେଇବା ଇତିହାସ ।

ଦୁସରା ସାକ୍ଷୀ ଅସି ହାଜର ସେତେବେଳକୁ ହାକିମଙ୍କ ଇଜଲାସ ଆଗରେ । ମୁଣ୍ଡରେ ହାତେ ଓଢ଼ଣା । ଚେହେରା କାନ ପାଉନ । ଗୋଟାପଣେ ଥରୁଛି । ଗୋପୀ ପଧାନର ସ୍ତ୍ରୀ ।

"ହାଁ, ତୁମି କ କରେଛିଲ ?"

ପ୍ରଶ୍ନର ଉତ୍ତର ନମିଳିବାରୁ ଦଫାଦାର ନବଘନ ସାହୁ କଥାଟାକୁ ଓଡ଼ିଆରେ ତର୍ଜମା କରିଦେଇ କହିଲା—ଆଲୋ ସାବାବ ପଚାରୁଚନ୍ତି ତୋ ଗିରସ୍ତ ଡାଲ ଧରି ବାହାରକୁ ଗଲାବେଳେ ତୁ କଅଣ କରୁଥିଲୁ ?

ଗୋପୀ ପଧାନ ସ୍ତ୍ରୀର ପାଟି ଖନ ବାଜ ଯାଉଥାଏ । କହିଲା, "ମୁଁ ପା ପିଣ୍ଡାରେ ବଇଥେଲି—ବୁଢ଼ାକୁ କାଲେ ଡର ନାଗିବ ବୋଲି ।"

ଦଫାଦାର ଘନ ସାହୁ ନେମାଇଁ ଦାରୋଗା କାନ ପାଖରେ ନଇଁ ପଡ଼ି ବୁଝେଇ ଦେଲା କଥାଟା—ହଜୁର, ଏ ମାଇକନା ବସିଥେଲା ପିଣ୍ଡା ଉପରେ, ତା ସ୍ୱାମୀକୁ ଜଗିବ ବୋଲି । ଆମର ଆଡ଼େ ଗାଁଗଣ୍ଡାରେ ସ୍ୱାମୀ ସ୍ତ୍ରୀ ଏମିତି ଜଗାଜଗି ହେଇ ଚଳନ୍ତି ହଜୁର ।

କିନ୍ତୁ ନେମାଇଁ ଦାରୋଗାର ବ୍ରହ୍ମଚୈତନଟା ଏଥର ବସିଲା ଗୋପୀ ପଧାନର ମାଇପ ଉପରେ ନୁହେଁ—ଦଫାଦାର ଘନ ସାହୁଙ୍କର ଫାକୁଲା ଫାକୁଲା ଗାଲ ଯୋଡ଼ିକରୁ ଗୋଟାଏ ଉପରେ, ଆଉ ତତ୍କ୍ଷଣାତ୍ ତା'ର କାରଣଟା ମଧ୍ୟ ଜଣାପଡ଼ିଗଲା । ନେମାଇଁ ଦାରୋଗା ପୂର୍ବପର ଚେଁଇଉଠିଲା, "ମିଥ୍ୟାବାଦୀ, ତୁମି ସବାଇ ମିଥ୍ୟାବାଦୀ । ଏ ଜନାନାଟା ତ ନିଶ୍ଚିକ ଗୋପୀ ପଧାନର ଗୃହିଣୀ—ପିଣ୍ଡାତେ ବସିଛିଲ କେନ ? ତୁମେ ସବାଇ କ ଭୁଲିଗେଲ ମହାପୁରୁଷେର ବାଣୀ—ନିଶ୍ଚିକ ଗୃହିଣୀ ଗୃହ ଲିପ୍ତ ଆଛି ? ଏ ଜନାନା ତ ଗୃହ ଲିପ୍ତଛିଲ—ପିଣ୍ଡାତେ ବସିଲ ବଲି କହୁଛ କେମନ୍ ? ମିଥ୍ୟାବାଦୀ । ଆରେ, କେ ଅଛରେ, ଏ ଜନାନାଟାକେ ବ ହାତକଡ଼ି ପିନ୍ଧାଇ ଦାଓ ତ । ତୁମାଓ ଆର୍ କୋଇ ସାକ୍ଷୀ ଆଛେ ଯଦ ।"

ବମ୍ପୁଷି ମୌଜାର ଡାଲ ଚୋରି ମକଦମାର ୩ ନମ୍ବର ସାକ୍ଷୀକୁ ତକ୍ଷଣେ ହାଜର କରାଗଲା ସରଜମିନ୍ ଉପରେ । ଗୋପୀ ପଧାନର ବଡ଼ପୁଅ ମାଧିଆ । ବୟସ ବାଇଶି ଚବିଶି । ଭେଣ୍ଡା ଟୋକାଟାଏ । ବାହା ହୋଇଥାଏ ନୂଆକରି । ବାପ ଗୋପୀ ପଧାନର କୋଳଥ ଅଟକାଳିଖିଆ ଗଣ୍ଡଗୋଲରେ ବରଚଗ ଅଂଶୀଦାର ହେଉଥାଏ ମଧ୍ୟ କେତେକାଂଶରେ । ତେବେ ଘଟଣା ଦିନ ସନ୍ଧ୍ୟାକାଳ ବାପ ଡାଲଟିଏ ଧରି ବାହାରକୁ ବାହାରି ଗଲାବେଳେ ଆଉ ତା ପାଖରେ ମା ବୁଢ଼ୀ ମଧ୍ୟ ଘରୁ ବାହାରି ଯାଇ ଦାଣ୍ଡ ପିଣ୍ଡାରେ ବସିବସିକା ଘୁମୋଉଥିବା ଅବସ୍ଥାରେ ଭେଣ୍ଡା ପୁଅ ମାଧିଆ ତାର ନବ-

ବିବାହିତା ସ୍ତ୍ରୀଟି ଢାଙ୍ଗରେ ଟିକେ ଗେଲ ହବାର ସୁଯୋଗ ପାଇପାରୁଥିଲା—ଏତିକି ବିଚାରର ଦୋଷ । ସତେକି କୃଷକ କୁଳରେ ଜାତ ମାଧିଆର ଏ ଦୋଷ ଦୁର୍ବଳତା ମଧ୍ୟ ନେମାଇଁ ଦାରୋଗାର ସଜ୍‌ଜାନତା ଗୃହାଣୀରୁ ଲୁଚିଯିବାର ସମ୍ଭାବନା ନଥିଲା । ହଁ, ଅବଶ୍ୟ ସେମିତି ସଜ୍‌ଜାନତା ପରି ନେମାଇଁ ଦାରୋଗାର ଜେରା ଆରମ୍ଭ ହୋଇଲେ—ଆସୁ ! ତୋମାର ନାମଟା କ ?

"ହଜୁର୍ ମୋ ନାଁ ମାଧିଆ ।"

"ଆବେ ଭଲକରି କହ—ହଜୁର୍, ତା ନାଁ ମାଧବ, ମାଧବ ପଧାନ ଆଜ୍ଞା ।" ମାଡ଼ଖିଆ ଦଫାଦାର ଘନ ଗଉଁଲଟି ବିଚାରେ ଏଥି ମଧ୍ୟରେ ଖୁବ୍ ଚେଙ୍ଗା ହେଇଉଠିଥାଏ । ମାଧିଆ ମୁହଁରୁ ହାକିମ ସାମନାରେ ସତ ଜବାବ ନିକାଳିନା ଲକ୍ଷ୍ୟରେ ଟୋକାଟାର ବବୁରି ବାଳ କେରାକୁ ଜୋର୍‌ରେ ନିଜ ମୁଠା ଭିତରେ ଟିଙ୍କି ଧରି ଦଫାଦାର ଘନ ଗଉଁଲ ପୁଲିସ୍ ପକ୍ଷରୁ ନିଜେ ମଧ୍ୟ ଜେରା କରିବାକୁ ବସିଯାଇଥିଲା ପ୍ରାୟ ।

"ଆବେ, ତୋ ବୋପା ମା ଘରେ ନଥିଲାବେଳେ କ'ଣ କରୁଥିଲୁ ସେଦିନ ଅଧ ରାତିରେ କହୁନୁ ଶଳାଟା—ଅନେଇଚୁ କ'ଣ ବଳଦ ଭଳିଆ ସେମିତି ହଇରେ !"

ଦଫାଦାର ଘନ ଗଉଁଲର ବାଳ ଓଟରା କି ଗାଲ ତୋଡ଼ାକୁ ମାଧିଆ ଭଳିଆ ହୁଣ୍ଡାର ଖାତିର କରିବାର କିଛି ନଥିଲା ପ୍ରକୃତରେ । ଗୁହିଁଥିଲେ ଦଫାଦାର ସମେତ ନେମାଇଁ ଦାରୋଗା ଭଳି ହେଁ ସ୍ତ୍ରୀ ହେଁ ମୁଣ୍ଡିଆ ପଞ୍ଚହତା ମରଦଙ୍କୁ ମଧ୍ୟ କାଖରେ ଜାକି ଧରି କାବୁ କରିଦେଇ ପାରିଥାନ୍ତା ସେ । ଓଡ଼ିଆ ଚଷାଙ୍କ ବଳ ତ ପୁଣି ଇତିହାସ ସ୍ୱୀକାର କରିଚି ଏ ଦେଶରେ !"

ଆମ କବିଙ୍କର ଇତିହାସ ଚେତନା ପ୍ରାୟ ଏହିପରି ଗୋଟିଏ ଜଳରୁ ବାସୁକନା ବାହାରି ଆସିଉଠେ ତାଙ୍କର ନଦୀ ଭଳି ଅନର୍ଗଳ ପ୍ରବାହିତ ଅଥଚ ଅଥଳ କୂଳ ଗଳ୍ପ ସାଗର ପରି ସ୍ଥିର ଗମ୍ଭୀର ହ୍ୟୁମରସ୍ ଚେହେରା ଟିଣ୍ଡିକ ଉପରେ ।

କିନ୍ତୁ ତାଙ୍କର ଏ ଇତିହାସ ଚେତନା ଆମ ସହରୀ ଏଲିଟିଷ୍ଟ୍ ଶ୍ରୋତୃମଣ୍ଡଳୀକୁ ଆକ୍ରାନ୍ତ କରିଆସୁଥାଏ ଅନ୍ୟ ପ୍ରକାରେ ।

"ହଁ, ଅଜା !" ଶ୍ରୋତାଙ୍କ ଭିତରୁ କେହି ଜଣେ ବୁଦ୍ଧିମାନ୍ ଆମ କବିଙ୍କୁ ସମର୍ଥନ କଲାପରି ଅନୁଯୋଗ ଆରମ୍ଭ କରିଆସୁଥାଏ, "ଗାଉଁଲେ—ଆଜିକାଲି ସରକାରୀ ଗୃକିରିରେ ମଧ୍ୟ ଓଡ଼ିଆଙ୍କ ଦୁର୍ଦ୍ଦଶା ଖୋଦ୍ ଓଡ଼ିଆର ନିଜ ଘରେ ।"

କିନ୍ତୁ ଅନୁଯୋଗଟିକୁ ଶେଷ ହେବାକୁ ଦିଅନ୍ତି ନାହିଁ ସାଧାରଣତଃ ଆମ କବି ସେଭଳି ସଭା ସମିତିରେ । ଜଣେ ପୋଖତ ଐତିହାସିକ ପରି ଇତିହାସକୁ ଯଥାର୍ଥ କାଳବନ୍ଧିଭୂତ ହେବାକୁ ଛାଡ଼ି ଦିଅନ୍ତି ନାହିଁ ସେ ଆଦୌ । ଖେଳ ଦେଖାଇବାକୁ ଧରାଯାଇଥିବା ସାପକୁ କେବଳ ଖେଳ ଛଡ଼ା ଅନ୍ୟ କାମରେ ପ୍ରୟୋଗ ନକରିବାକୁ

କହମ୍ ଖାଇଥିବା କେଲାଟିଏ ପରି ଆମ ହାକେଇ ଜଣେ ଅତ୍ୟନ୍ତ ସାଧୁ ବ୍ୟକ୍ତି ତାଙ୍କ ନିଜ ସ୍ତ୍ରୀଫେସନ୍‌ରେ ।

"ଆରେ ମାର୍ ଗୁଳି ତମ ସ୍କୃକଗକୁ ମ ! ଆଗ ଶୁଣ ନେମାଇଁ ଦାରୋଗା କେମିତି ସାବାଡ଼୍ କଲି ସାକ୍ଷୀ ମାଧିଆ ପଧାନକୁ ପଦେ ମାତ୍ର କେରାରେ ।" କହେଇଙ୍କର ଚଲି ଚଲି ବଡ଼ ବଡ଼ ଆଖି ଯୋଡ଼ିକ ହେତେବେଳକୁ ଅଦୃଶ୍ୟ, ନିମୀଳିତ । ଅନ୍ତର୍ଦୃଷ୍ଟି ସମ୍ପୂର୍ଣ୍ଣ କାର୍ଯ୍ୟରତ, ଉନ୍ମୁକ୍ତ । ସେଇ ଅବସ୍ଥାରେ ସମସ୍ତଙ୍କ ସବୁଠୁଁ ବେଶି ପ୍ରସ୍ତାବିତ କହିପାରନ୍ତି ସେ ଅବଶ୍ୟ ତାଙ୍କ ଇତିହାସ ଚର୍ଚ୍ଚାରେ । କିନ୍ତୁ କଥା ସେଠି ନଥାଏ । ଆମ କହେଇ ସ୍ୱଭାବତଃ ଟିକଏ ବେଶି ଲାଜକୁଳା । କୌଣସି ସମାବେଶରେ ମିଶ୍ରିତ ଶ୍ରୋତା ଅର୍ଥାତ୍ ନାରୀ ପୁରୁଷ ଉଭୟ ପ୍ରକାରର ଶ୍ରୋତା ଏକାଠି ବସିଥିବାବେଳେ ଆମ କହେଇ ପ୍ରାଚୀନ ସମ୍ଭ୍ରାନ୍ତବଂଶଜଙ୍କ ପରି ପ୍ରକୃତରେ ଅତି ସଂଯତ ସଙ୍କୁଚିତ ହୋଇପଡ଼ନ୍ତି, ବିଶେଷତଃ ଏହିପରି ଡେଲିକେଟ୍ ବ୍ୟାପାରଗୁଡ଼ିକର ବର୍ଣ୍ଣନା କାଳରେ ।

"ଘନ ଦଫାଦାର ମାଧିଆକୁ ଖବର କୋବଲେଇଲି ସତ୍ୟ ଘଟଣାଟା ପ୍ରକାଶ କରିଦେବାକୁଁ ଦାରୋଗା ଆଗରେ । କିନ୍ତୁ ମାଧିଆ ଚୁପ୍ । ଘଟଣା ସ୍ଥଳରେ ଜମିଚନ୍ତି ହଜାର ହଜାର ଲୋକ । ବମ୍ଭୁଖି ମୌଜା ଗୋପୀ ପଧାନର ଚାଳ ସ୍କେଷ କେଶ୍ ସେ । ପୁଣି ସରଜମିନ୍‌କୁ ଆସିଚନ୍ତି ଦାରୋଗା ବାବୁ ନିଜେ । ବାପ୍ରେବାପ୍ ଏତେ ବଡ଼ କେଶ୍ ବଗ୍ରର ସେପର୍ଯ୍ୟନ୍ତ ଦେଖି ନଥିଲେ କେହି ସେଦିନଯାକେ—ଆମ ଜମିଦାରୀର ସେ ବିରାଟ ଜନବହୁଳ ଅଞ୍ଚଳ ବମ୍ଭୁଖି ମୌଜାର ଗ୍ଳଣ ପଗୁଣଖଣ୍ଡ ଗାଁରେ ।

"ମାଧିଆକୁ ମଳି ଭଳି ଠିଆ ହୋଇଥିବା ଦେଖି ଘନ ଦଫାଦାରର ଦେହ ଆଉ ସହିଲି ନାହିଁ ନଷ୍ଟେ । ଦେଲି ଗୋଟାଏ ଖୋଦଣ କଷିକରି ତା ତଳି ପେଟରେ । ମାଧିଆଟା ହାମୁଡ଼େଇ ପଡ଼ିଲି ସେ ଧକ୍କାରେ ମାଟି ଉପରେ । ମାଟି କାମୁଡ଼ି ପକେଇଲି ମଧ୍ୟ । କିନ୍ତୁ ଅଳ୍ପ ସମୟ ପରେ ଆପଣା ସ୍ତ୍ରୀଏଁ ଉଠି ବସିଲି ସେ । ତା ମୁହଁ ସ୍ୱରପଟେ କଖାମାଟି । ଓଠରେ ମାଟି । ଦାନ୍ତି ଭିତରେ ବି ମାଟି । ଥୁ ଥୁ କରି ଗ୍ରେଟ ପିଲଙ୍କ ପରି ମୁହଁରୁ ମାଟି ମିଶା ଛେପ କାଢ଼ି ପକୋଉଥାଏ ସେ । ଅବଶ୍ୟ ଏତେ ସବୁ ହେଲେ ବି ତା ଆଖିରେ କାନ୍ଦ ନଥାଏ—ବରଂ ହସୁଥାଏ ସେ ବି ଟିକେ ଟିକେ ।

ମାଧିଆର ଏ ଅବସ୍ଥା । ତେଣେ ହୁଲିର ପଡ଼ଗଲି ଦେଂଶାହାରଙ୍କ ଭିତରେ ଯେ କଥା ଶେଷ । ଗୋପୀ ପଧାନ ବଦୈଶଟା ଗୋଟାଏ ମିଛ ମକଦ୍ଦମା ଭିଏଇ କେମିତି ଏଇଲେ ଯିବେ ମାମୁଁ ଘଣ୍ଟିକୁ—ଏଇ ଦୃଶ୍ୟ ଦେଖି ଉପଭୋଗ କରିବାକୁ ସମସ୍ତେ ତିଆର ।

"ସରଜମିନ୍ ତଦନ୍ତ ଶେଷ ହେଲି ବୁଝି ପୁଲିସ୍ କନେଷ୍ଟବଲମାନେ ମଧ୍ୟ ମିଥ୍ୟା ସାକ୍ଷ୍ୟ ଦେଇଥିବା ଅପରାଧୀ ଗୋପୀ ପଧାନ ଓ ତା ସ୍ତ୍ରୀ ସମେତ ଯୁଆନ ପୁଅ ମାଧିଆ ହାତରେ ହାତକଡ଼ା ପକେଇବାକୁ ତିଆର । ଜଣେ ହାବିଲ୍‌ଦାର୍ ହାତକଡ଼ାର ଫାଶେ ମେଲିକରି

ଧର ମାଧିଆର ଡାହାଣ ହାତରେ ଗଳେଇବ କି ନ ଗଳେଇବ ସବୁ ଶେଷ ଆଦେଶ ପାଇଁ ଅପେକ୍ଷା କରୁଥାଏ ନେମାଇଁ ଦାରୋଗାଙ୍କ ଭ୍ରୂଭଙ୍ଗୀର ଶେଷ ଭଙ୍ଗିଟିକୁ । ଲୋକେ ହାଉ ହାଉ । ରୋପୀ ପଧାନ ଘରଆଡ଼ୁ ବଡ଼ ପାଟିରେ ବାହୁନା ମଧ୍ୟ ଶୁଣାଗଲଣି ପଧାନ ଘର ଭୂଅସୁଣୀ ବୋହୂ କାନ୍ଦୁଛି ।

ନେମାଇଁ ଦାରୋଗା ସେପର୍ଯ୍ୟନ୍ତ ଚୁପ୍‌ଚାପ୍ । ଗୋଡ଼ ଉପରେ ଗୋଡ଼ ପକେଇ ହାତଭଙ୍ଗା କୁରୁସି ଖଣ୍ଡିଏ ଉପରେ ସେ ଯଥାର୍ଥ ସ୍ୱର୍ଗୀୟ ପ୍ରାସ୍ତେ ବସିଥାଏ । ତା'ର ଅଖି କିନ୍ତୁ ନଥାଏ ଅନ୍ୟ କୋଉଠି—ସାପ ଦଂଶିବା ଥାନାରେ କେଳା ଜାଲମନ୍ତ୍ର ଆପିଲା ଭଳି ଆପି ହୋଇଯାଇଥାଏ ସେ ଦୃଷ୍ଟି ମାଧିଆର ମାଟିଖିଆ ପାଟି ଉପରେ । ଓଃ, ଟେରା ବେଳ ଅନେଇ ବସିଲା ନେମାଇଁ ଦାରୋଗା ସେ ଦୃଶ୍ୟକୁ । କଅଣ ଦେଖୁଥାଏ କେଜାଣି ?

ଘନ ଦଫାଦାର ଇତମଧ୍ୟରେ ଘନଘନ ଅନୁରୋଧ କଲାଣି ହାବିଲ୍‌ଦାର କାନରେ ଶୀଘ୍ର କାମ ଛୁଣ୍ଡେଇ ପରବର୍ତ୍ତୀ କାର୍ଯ୍ୟକ୍ରମ ଆରମ୍ଭ କରିଦେବାକୁ । କିନ୍ତୁ ହାବିଲ୍‌ଦାର୍‌କୁ ଖୁବ୍ ଜଣା ଘନିଆ ଦଫାଦାରଟା କିଏ ଅଉ ନେମାଇଁ ଦାରୋଗା କିଏ । ଖୋଦ୍ ଦାରୋଗାଙ୍କ ମୁହଁରୁ ଅର୍ଡ଼ର ନପାଇ କାମ କଲେ କି ବିପଦ ଥାଏ ଅଟକୁ ହାବିଲ୍‌ଦାର୍‌କୁ ଘନିଆ ଦଫାଦାର ଶିଖେଇବା ପର୍ଯ୍ୟନ୍ତ ସିବନାହିଁ ଅଦୌ । ଏହାପରେ ଛକାଛକରେ ମିଣ୍ଟିକି ମିଣ୍ଟି ଗଡ଼ିଗଲା ।

ଆଉ, ଏଇ ଅବ୍ୟବସ୍ଥା ଭିତରେ ହଠାତ୍ ଶୁଣାଗଲା ନେମାଇଁ ଦାରୋଗାର ସ୍ୱର— "ଏ ହାବିଲ୍‌ଦାର୍ !" ନେମାଇଁ ଦାରୋଗାର ଗୋଟାଏ ହେଣ୍ଟାଳରେ ଲୋକଗୁଡ଼ାକ ଗୋରୁଙ୍କ ଭଳି ହୁରୁଡ଼ିଗଲେ ଘରଆଡ଼କୁ, "ଏକେ ଗ୍ରୁଡ଼ଗ୍ରୁଡ଼ ! ଏଟା ମାଲୁମ ପଡ଼େଛେ ସତ୍ୟବାଦୀ । ଏଟାର ନାମଟା ମାଧବ । ଏ ଜୋ ମାଟି ଖାବେଇ ନିଶ୍ଚେ । ଆରେ ଏଖାନେକାର ମହାପୁରୁଷେର ବାଣୀ ଆଛେନା—

ଗୋଚେଣ୍ଡି ରୋରେଣ୍ଡି ଏରେଣ୍ଡି ଉପରେ
ମାଧୋବ ବୋପିଲେ ଯାଇଁ
ମାତାଙ୍କ ଅଡ଼କୁ ଅନାଇଁ ଅନାଇଁ
ମାଟି ଦେଉଅଛୁ ଖାଇଁ ।

ମାଧିଆଟା ସତରେ ଅନେଇ ରହିଥିଲା ତା ମା ମୁହଁକୁ ।

ଆମ କକେଇଙ୍କ ଅଦୃଶ୍ୟ ନିମୀଳିତ ଚକ୍ଷୁଯୁଗଳ ତାଙ୍କର ପ୍ରଶସ୍ତ କପାଳତଳେ ପୁଣିଥରେ ଦୃଶ୍ୟମାନ ହେଲାବେଳକୁ ଆମର ସହସ୍ର ଏଲାଟ୍‌ରୋଷ୍ଟୀ ନିଶ୍ଚୁପ୍ । କେତେଜଣ ମହିଳା ଅବଶ୍ୟ ଅଖି ପୋଛିବାରେ ବ୍ୟସ୍ତ ।

---